# ମୌଲାନା ଆଜାଦ୍



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଭୁବନେଶ୍ୱର

ମୌଲାନା ଆଜାଦ୍

ଲେଖକ ଡଃ. ହେମନ୍ତ କୁମାର ଦାସ

ପ୍ରକାଶକ ନିର୍ଦ୍ଦେଶକ,
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଜନଶିକ୍ଷା ଭବନ, ୟୁନିଟ୍-୫, ଭୁବନେଶ୍ୱର - ୭୫୧ ୦୦୧

ପ୍ରଥମ ମୁଦ୍ରଣ ୧୯୯୭

ଦ୍ୱିତୀୟ ମୁଦ୍ରଣ ୨୦୦୧

ପ୍ରକାଶନ ସଂଖ୍ୟା ଏସ୍.ଆର.ସି.-୨୨୨-୨୩/୯୭

ମୁଦ୍ରଣ ସଂଖ୍ୟା ୨,୦୦୦

ମୁଦ୍ରଣ ଭୋଳାନାଥ ପ୍ରେସ୍
୧୨୦୧/୧୬୦୧, ବମିଖାଲ, ଭୁବନେଶ୍ୱର-୭୫୧୦୧୦

ମୂଲ୍ୟ ଚାରି ଟଙ୍କା ପଚାଶ ପଇସା ମାତ୍ର

MOULANA AZAD

Author DR. HEMANTA KUMAR DAS

Publisher Director,
State Resource Centre for Adult Education, Orissa
Janasiksha Bhawan, Unit-5, Bhubaneswar - 751001

1st Edition 1997

2nd Edition 2001

Publication No. SRC -222-23/97

No. of Copies Printed : 2,000

Printed at Bholanath Press
1201/1601, Bomikhal, Bhubaneswar- 751010

Price Rupees Four and Paise Fifty only

**ଫୁଲର ମହକ :**

୧୯୨୧ ମସିହାର କଥା ହେବ । ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନର ଡାକରା ଦିଆଯାଇ ସାରିଥାଏ । ସାରା ଦେଶରେ ଏଥିପାଇଁ ହଂଇଚଇ ସୃଷ୍ଟି ହୋଇଥାଏ । ସଭାସମିତି ମାନ ହେଉଥାଏ । ନେତାମାନେ ଗାନ୍ଧିଜୀଙ୍କ କଥା ଲୋକଙ୍କୁ ବୁଝାଉଥାଆନ୍ତି । ସେତେବେଳେ ଦେଶରେ ଇଂରେଜ ସରକାର ଥାଏ । ସେମାନେ ବି ଚୁପ୍ ହୋଇ ବସିନଥାନ୍ତି । ଦଳ ଦଳ ଲୋକଙ୍କୁ ଧରି ଜେଲ୍‌ରେ ପୂରୋଉଥାଆନ୍ତି । ତେବେବି ସଭାସମିତି ବନ୍ଦ ହେଉନଥାଏ ।

ଏତିକିବେଳେ ପାଟଣାରେ ଗୋଟିଏ ବଡ଼ସଭା ହେଲା । ବିହାରର ନେତାମାନେ ଜଣକ ପରେ ଜଣେ ଉଠି ଗାନ୍ଧିଜୀଙ୍କ କଥା ଲୋକଙ୍କୁ ବୁଝାଇଲେ । ସରକାରଙ୍କ ସହିତ କୌଣସି କାମରେ ବୁଝାମଣା ନକଲେ, ଇଂରେଜମାନେ ଯେ ଦେଶ ଛାଡ଼ି ପଳାଇବାକୁ ବାଟ ପାଇବେ ନାହିଁ, ଏଇ କଥା ଲୋକମାନଙ୍କୁ କହିଲେ । ସେ ଦିନ ସଭାରେ ଲୋକ ଥାଟପଂଟାଳି ମାରୁଥାଆନ୍ତି । ଥାଳି ମାରି ଦେଲେ ଥାଳି ଚାଲିଯିବ, ଏମିତି ଅବସ୍ଥା । ତାଳି ଖାଲି ଅଜାଡ଼ି ହୋଇ ପଡୁଥାଏ ।

ଏହି ସମୟରେ ଜଣେ ଯୁବକ କହିବାକୁ ଉଠିଲେ । ପହରଣରୁ ଜଣାଯାଉଥାଏ, ସେ ଜଣେ ମୁସଲମାନ ହେବେ । ପିନ୍ଧାଲୁଗାରେ କେଉଁଠି ବି ଟିକିଏ ଦାଗ ନାହିଁ । ଧୀର ସ୍ଥିର ଚେହେରା । ସେଥିରୁ ସତେ ଯେମିତି ଗୋଟାଏ ଆଲୁଅ ବାହାରୁଥାଏ । ସେ ପହିଲେ ଆଗରେ ରୁଣ୍ଡ

ହୋଇଥିବା ଲୋକଙ୍କ ଆଡ଼କୁ ଥରେ ଅନାଇଲେ । ସେଇ ଚାହାଣିରେ କି ଯାଦୁ ଥିଲା, କେଜାଣି ସମସ୍ତେ ଚୁପ୍ ହୋଇଗଲେ । ଛୁଞ୍ଚିଟିଏ ପଡ଼ିଗଲେ ବି ଶୁଣାଯିବ-ଏମିତି ଅବସ୍ଥା ।

ତା'ପରେ ଯୁବକ ଜଣକ କହିବାକୁ ଆରମ୍ଭ କଲେ । ଇଂରେଜ ସରକାର ଲୋକମାନଙ୍କୁ କିଭଳି ପୋକମାଛି ଭଳି ମଣୁଛି, ସେଇକଥା କହିଲେ । ସେ ଆହୁରି କହିଲେ, ''ଭାଇମାନେ ! ଇଂରେଜ ହାତରେ ହାତହତିଆରର ସୁମାରି ନାହିଁ । ବନ୍ଧୁକଗୁଳିରେ ଆମେ ତାଙ୍କ ସାଙ୍ଗରେ ପାରିବା ନାହିଁ । ତେବେ କ'ଣ ଆମେ ଖାଲି ପଡ଼ି ପଡ଼ି ସେମାନଙ୍କ ହାତରେ ମାଡ଼ଖାଇବା ?

ଆମର ନେତା ଆମକୁ କହିଛନ୍ତି ଅହିଂସା କଥା । ନିଜ ଆଡୁ ଆମେ ଆଗ କାହା ଉପରେ ହାତ ଉଠାଇବା ନାହିଁ । ତେବେ ମାଡ଼ଖାଇ ଡରୁଆ ଭଳି ପଳାଇ ଆସିବା ହେବ ଭାରି ଅପମାନର କଥା । ପିମ୍ପୁଡ଼ିଟିଏ ଉପରେ ଗୋଡ଼ପଡ଼ିଗଲେ, ସିଏ ବି କାମୁଡ଼ିଦେଉଛି । ଆମେ କ'ଣ ତା'ଠୁଁ ବି ହୀନ ?

ଆମର ଗୁଳିଗୁଳା ନାହିଁ । ବୋମା ପିସ୍ତଲ ନାହିଁ । ତେବେ ଆମର ଯାହା ଅଛି ସରକାରର ତା' ନାହିଁ । ଆମର ଅଛି ଲୋକ ବଳ । ଭାରତର ତେତିଶ କୋଟି ଲୋକ ଆମ ପଛରେ ଠିଆ ହୋଇଛନ୍ତି । ସରକାର କେତେ ଲୋକଙ୍କୁ ବାନ୍ଧିବେ ? କେତେଲୋକଙ୍କୁ ଜେଲ୍‌ରେ ପୂରେଇବେ ? ଏତେ ଲୋକଙ୍କୁ ଅଟକାଇଲା ଭଳି ଜେଲ୍ କ'ଣ ଭାରତରେ ଅଛି ? ଆପଣମାନେ ନିର୍ଭୟରେ ଗାନ୍ଧିଜୀଙ୍କ ପାଖରେ ଆସି ଠିଆ ହୁଅନ୍ତୁ । ଦେଖିବେ, ଇଂରେଜମାନେ ନିଶ୍ଚେ ଦେଶ ଛାଡ଼ି ପଳାଇବେ । ତା'ପରେ

ଦେଶ ହେବ ଆପଣମାନଙ୍କର । ଯେମିତି ଚଳାଇବାକୁ ଚାହିଁବେ ଦେଶ ସେମିତି ଚାଲିବ ।''

ତାଙ୍କ ଧୀର ଗମ୍ଭୀର କଥାରେ ସଭା ଖାଲି ଗମ୍ ଗମ୍ କମ୍ପୁଥାଏ । ଲୋକମାନେ ତାଳିମାରିବାକୁ ଭୁଲିଯାଇ ଢଳ ଢଳ ହୋଇ ସେଇ ଯୁବକଙ୍କ ଆଡ଼କୁ ଅନାଇ ଥାଆନ୍ତି ।

ଭାଷଣ ସରିଗଲା । ହଠାତ୍ ଦେଖାଗଲା, ସଭା ଯେମିତି ମାତି ଉଠିଛି । ଶହ ଶହ ପାଠ ପଢୁଆ ଯୁବକ ସେଇଠି ପାଠପଢ଼ା ଛାଡ଼ିଦେଲେ ବୋଲି ପାଟିକରି କହୁଥାଆନ୍ତି । କିଏ ରାଗରେ କମ୍ପୁଥାଏ ତ କିଏ କାନ୍ଦିପକାଉଥାଏ । ସେଇ ସଭାକଥା ମନେପକାଇ ପରେ ଜଣେ ଯୁବକ କହିଥିଲେ- ''ଜୀବନରେ ଆଉ ସେମିତି କଥା ଶୁଣିବାକୁ ମିଳିଲା ନାହିଁ । ଭାଷଣ ଚାଲିଥାଏ । ଆମର ମନେ ହେଉଥାଏ ଗଙ୍ଗା ପାଣି ସତେଯେମିତି ହୁ ହୁ ହୋଇ ଜଳୁଛି ।''

ଯିଏ ସେଦିନ ସଭାରେ ଏମିତି ନାହିଁ ନଥିବା ଅବସ୍ଥା ସୃଷ୍ଟି କରି ଦେଇଥିଲେ, ତାଙ୍କର ନାମ ଆବୁଲ୍‌କାଲାମ ଆଜାଦ୍ । ତାଙ୍କରି ଯାଦୁ ବୋଳା କଥାରେ ସେଦିନ ଶହ ଶହ ଯୁବକ ପାଠ ଛାଡ଼ି ଦେଇଥିଲେ । ଗାନ୍ଧିଜୀଙ୍କ ପତାକା ତଳେ ଆସି ଠିଆ ହୋଇଥିଲେ ।

ଆଜାଦ୍ ଯେତେବେଳେ ଆହୁରି ସାନ ଥିଲେ, ସେତେବେଳେ ଲୋକେ ତାଙ୍କର ଭଲ ଗୁଣ ବିଷୟରେ ଜାଣିପାରିଥିଲେ । ୧୯୦୩ ମସିହାରେ ଯେତେବେଳେ ତାଙ୍କୁ ମୋଟେ ପନ୍ଦର ବର୍ଷ ବୟସ ସେତେବେଳେ ସେ କଲିକତାରେ ରହୁଥିଲେ । ସେଇଠି ସେ 'ଲିଆନୁଲ ସିଦ୍ଧିକ' ବୋଲି ଗୋଟିଏ ପତ୍ରିକା ବାହାର କଲେ । ମୁସଲମାନ ମାନଙ୍କ

ଭିତରେ ସେତେବେଳେ କେତେ ଅନ୍ଧବିଶ୍ୱାସ ଚାଲୁଥାଏ । ଧର୍ମ ନାଆଁରେ ଏ ସବୁ କୁଥା ଚଳାଇ ସମାଜର ବଡ଼ପଣ୍ଡାମାନେ ମୁସଲମାନମାନଙ୍କୁ ନିଜର ସ୍ୱାର୍ଥରେ ଲଗାଉଥାଆନ୍ତି । ଆଜାଦ୍ ନିଜର ପତ୍ରିକାରେ ଏସବୁ ବିଷୟରେ ଖୁବ୍ ଲେଖାଲେଖି କଲେ । ଲୋକଙ୍କ ଆଖି ଖୋଲି ଦେଇ, ସତକଥାଟା ସେମାନଙ୍କୁ ଜଣାଇଦେବାକୁ ଚାହିଁଲେ । ଏଇଥିରେ ସେ ଖୁବ୍ କମ୍ ଦିନ ଭିତରେ ଚାରିଆଡ଼େ ଜଣାଶୁଣା ହୋଇଗଲେ ।

୧୯୦୪ ମସିହା କଥା । ସେତେବେଳେ ଲାହୋର୍‌ଠାରେ ମୁସଲମାନ ମାନଙ୍କରଗୋଟିଏ ସଭା ଚାଲିଥାଏ । ଏଇଠିକୁ ଆଜାଦ୍‌ଙ୍କୁ ଡକାଗଲା । ସାରା ଭାରତର ବଡ଼ ବଡ଼ ମୁସଲମାନ ପଣ୍ଡିତମାନେ ସେଠି ଥାଆନ୍ତି । ଆଜାଦ୍ ସେଇ ସଭାରେ କିଛି କହିବେ ବୋଲି ତାଙ୍କୁ କଲିକତାରୁ ଡାକରା ଯାଇଥାଏ । ଲୋକେ ତାଙ୍କୁ ଦେଖି ନଥାନ୍ତି । ତେବେ ପତ୍ରିକାରୁ ତାଙ୍କ କଥାର ଓଜନ ବୁଝିଥାଆନ୍ତି ।

ସେଦିନ ଆଜାଦ୍‌ଙ୍କ ପାଳିପଡ଼ିବାରୁ ସେ ଉଠି ଠିଆ ହେଲେ । ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ । ନିଜ ନିଜ ଭିତରେ ପଚରା ପଚରି ହେଲେ - "ଏ ପିଲା ଜଣକ କିଏ ? ଏଡ଼େ ବଡ଼ ବଡ଼ ପଣ୍ଡିତମାନେ ଯୋଉଠି ଠୁଳ ହୋଇଛନ୍ତି, ସେଠି ଏ ପିଲାଟରା କି କାମ ? ସେ ବା କି କଥା କହିବ ?"

କେହି କେହି ତ ଧରିନେଲେ- ବାପ ଆସି ନପାରି ପୁଅହାତରେ ବୋଧେ ଲେଖାଟାଏ ପଠେଇଛନ୍ତି । ତେବେ ସଭାପତି ତାଙ୍କୁ ସମସ୍ତଙ୍କୁ ଚିହ୍ନାଇ ଦେଇଥିଲେ । ପହିଲେ ତ ଲୋକଙ୍କର ଆଖି ବଡ଼ ବଡ଼ ହୋଇଗଲା । ତାପରେ ସେମାନେ ଯେତେବେଳେ ତାଙ୍କ କଥା ଶୁଣିଲେ,

ସେତେବେଳେ ଏକେବାରେ ଥ' ହୋଇଗଲେ । ସେତେବେଳକୁ ଆଜାଦ୍‌ଙ୍କୁ ମୋଟେ ଷୋହଳ ବର୍ଷ ।

**ସାନ ହୋଇ ବାଉନ ହାତ :**

ଆଜାଦ୍‌ଙ୍କ ବାପା ମହମ୍ମଦ ଖୈରୁଦ୍ଦିନ୍ ଜଣେ ବଡ଼ ପଣ୍ଡିତ ଥିଲେ । ସାରା ଭାରତରେ ତାଙ୍କର ବହୁ ଶିଷ୍ୟ ଥିଲେ । ୧୮୫୭ ରେ ଭାରତରେ ଇଂରେଜମାନଙ୍କ ବିରୋଧରେ ଦେଶର ସିପାହୀମାନେ ପହିଲେ ମୁଣ୍ଡ ଟେକିଥିଲେ । ଖୈରୁଦ୍ଦିନ୍ ସେତେବେଳେ ସିପାହୀମାନଙ୍କ ସାଙ୍ଗେ ମିଶି ଲୋକଙ୍କୁ ମତାଉଥିଲେ । ସିପାହୀମାନେ ତ ହାରିଗଲେ । ଆଗପଛ ବିଚାରି ଖୈରୁଦ୍ଦିନ ଭାରତଛାଡ଼ି ଆରବ ଦେଶକୁ ଚାଲିଗଲେ । ସେଇଠି ତାଙ୍କର ବାହାଘର ହେଲା । ସ୍ତ୍ରୀଙ୍କ ନାଆଁ ଆଲିଆ ।

ମକ୍କା ବୋଲି ଜାଗାଟିଏ ଅଛି । ତାହା ମୁସଲମାନ ମାନଙ୍କର ବଡ଼ ତୀର୍ଥ । ସେଇଠି ଆଜାଦ୍ ଜନ୍ମ ହେଲେ ୧୮୮୮ ମସିହା ନଭେମ୍ବର ଏଗାର ତାରିଖରେ । ପାଠପଢ଼ା ବି ଆରମ୍ଭ କଲେ ସେଇଠି । ଖୁବ୍ ଅଳ୍ପ ଦିନ ଭିତରେ ସେ ଆରବୀ ଆଉ ଫାର୍‌ଶୀ ଦୁଇଟା ଭାଷାରେ ପଣ୍ଡିତ ହୋଇଗଲେ । ତାଙ୍କ ବାପା ବି ସେଇ ଭାଷା ଭଲ ଭାବରେ ଜାଣିଥିଲେ । ଆଜାଦ୍ ଭଲ ମନେ ରଖିପାରୁଥିଲେ । ଫାର୍‌ଶୀ ଆଉ ଆରବୀରେ ତାଙ୍କର ଭାଷଣ ଶୁଣି ମିଶର ଦେଶର ବଡ଼ ବଡ଼ ପଣ୍ଡିତମାନେ ବି କାବା ହୋଇଯାଉଥିଲେ ।

ମହମ୍ମଦ ଖୈରୁଦ୍ଦିନ ମକ୍କା ଛାଡ଼ି ଭାରତ ଆସିବାକୁ ଠିକ୍ କଲେ । ସେତେବେଳକୁ ଆଜାଦ୍‌ଙ୍କୁ ଦଶବର୍ଷ । ଖୈରୁଦ୍ଦିନ ଇଂରେଜମାନଙ୍କ ଉପରେ ବଡ଼ ଖପାଥିଲେ । ସେଇଥିପାଇଁ ସେ ପୁଅକୁ ପାଠଶାଳାକୁ

ପଠାଇବାକୁ ରାଜି ହେଲେ ନାହିଁ । ତେବେ ଘରେ ତାଙ୍କର ପଢ଼ିବାର ଭଲ ବ୍ୟବସ୍ଥା କରିଦେଲେ । ଖୁବ୍ କମ୍ ଦିନ ଭିତରେ ଆଜାଦ୍ ହିନ୍ଦୀ ଭାଷାଟାକୁ ବି ଶିଖି ପକାଇଲେ । ବାକି ରହିଲା ଗୋଟିଏ ଆଶା । ଇଂରେଜୀଟିକୁ କେମିତି ଶିଖନ୍ତେ । ତେବେ ଖୈରୁଦ୍ଦିନ ଥିବା ପର୍ଯ୍ୟନ୍ତ ତା'ତ ଆଉ ହୋଇ ପାରନ୍ତା ନାହିଁ । ଇଂରାଜୀ ସେ ଶିଖିଲେ ବାପାଙ୍କ ମଲାପରେ ।

ପାଠଶାଳାକୁ ଯାଇ ପାରି ନଥିଲେ ବୋଲି ଯେ ଆଜାଦ୍ ପଢ଼ାପଢ଼ିରେ ଖଇଚା କରୁଥିଲେ ଏ କଥା ନୁହେଁ । ଘରେ ବେଶୀ ବେଳ ସେ ପଢ଼ାପଢ଼ି ପାଇଁ ଦେଉଥିଲେ । ପଢୁ ପଢୁ କେତେବେଳେ ଦିନଯାଇ ରାତି ହେଉଥିଲା, ଏକଥା ତାଙ୍କୁ ଜଣାପଡୁନଥିଲା । ଥରେ ରାତିରେ କୁଆଡ଼େ ତାଙ୍କ ଘରେ ଚୋର ପଶିଲା । ବାକ୍ସ ଖୋଲି ହଜାର ହଜାର ଟଙ୍କା ନେଇ ପଳାଇଲା । ଆଜାଦ୍ ସେଇଠି ବସି ପଢୁଥିଲେ ।

ପରିବାରରେ ସେମାନେ ଥିଲେ ପାଞ୍ଚ ଭାଇ ଭଉଣୀ । ବାପା ମା'ଙ୍କ ସ୍ନେହ ଶ୍ରଦ୍ଧା ଭିତରେ ପିଲାମାନେ ବଢୁଥିବା ବେଳେ ହଠାତ୍ ମା' ସେମାନଙ୍କୁ ଛାଡ଼ି ସବୁଦିନ ପାଇଁ ଚାଲିଗଲେ । ଆଜାଦ୍‌ନଙ୍କୁ ସେତେବେଳକୁ ମୋଟେ ଏଗାର ବର୍ଷ । ମା'ଙ୍କ ମରଣ ତାଙ୍କୁ ବାଧିଲା । ତେବେ ମନକଥା ସେ କାହାକୁ କହିଲେ ନାହିଁ । ପଢ଼ାପଢ଼ି ଭିତରେ ବେଶୀ ବୁଡ଼ିଗଲେ ।

ଏତିକିବେଳେ ତାଙ୍କର ମନେ ହେଲା, ସେ ବି ବଡ଼ ବଡ଼ କବିମାନଙ୍କ ଭଳି ଲେଖାଲେଖି କରିପାରିବେ । ଭାବିବା ମାତ୍ରେ କାମ । ଲେଖାଲେଖି ଚାଲିଲା । ପତ୍ରପତ୍ରିକାରେ ସେ ସବୁ ବାହାରିଲା ।

ଚାରିଆଡ଼େ ସମସ୍ତେ ତାଙ୍କୁ ଜାଣିଗଲେ । ସେତେବେଳକୁ ତାଙ୍କୁ ମୋଟେ ବାରବର୍ଷ ।

ପଢ଼ା ଲେଖା ଚାଲିଥାଏ । ଥରେ ତାଙ୍କ ମନରେ ପଶିଲା ଯେ, ନିଜେ ଏଥର ଗୋଟିଏ ପତ୍ରିକା ବାହାର କରିବେ । ପତ୍ରିକା ବାହାରିଲା ବି । ତେବେ ବେଶୀଦିନ ବଞ୍ଚିଲା ନାହିଁ । ଏତେବେଳକୁ ତାଙ୍କୁ ତେର ବର୍ଷ ବୟସ ହୋଇଗଲାଣି । ସେଇଟି ବାହାହେବାର ବୟସ । ମୁସଲମାନ ପରିବାରରେ ତା' ଠାରୁ ବି କମ୍ ବୟସରେ ବାହାଘର ହୋଇଯାଉଥାଏ । ବାପାଙ୍କ ମୁଣ୍ଡକୁ ତେନ୍ତୁଳିଆ ବିଛା କାମୁଡ଼ିଲା । ଶେଷକୁ ବାହାଘର ଠିକଣା କରି ସେ ଶାନ୍ତିରେ ନିଃଶ୍ୱାସ ମାରିଲେ ।

ଆଠବର୍ଷର କନିଆକୁ ତେରବର୍ଷର ବର । ଯୁଲେଖା ବାହାହୋଇ ଆଜାଦ୍‌ଙ୍କ ଘରକୁ ଆସିଲେ । ନୂଆ ପରିବାର, ନୂଆ ମଣିଷଙ୍କୁ ଚିହ୍ନିଲେ । ତା'ପରେ ସେ ଘର କରଣାରେ ଲାଗିପଡ଼ିଲେ । ପୁଅଟିଏ ହେଲା । ବାପା ମା' ଦି' ଜଣଙ୍କୁ ଅଳପ ବୟସ । ପିଲାଟି ବଞ୍ଚିଲା ନାହିଁ । ଆଜାଦ୍ ତାଙ୍କର ପଢ଼ାପଢ଼ିରେ ଲାଗିଥାଆନ୍ତି । ଯୁଲେଖା ଘର କାମ ବୁଝନ୍ତି । ଏତିକିବେଳେ ଆଜାଦ୍ କୋରାନ୍‌ର ଗୋଟିଏ ଟୀକା ଲେଖିଲେ ।

ଲେଖା ଲେଖି ତ ଚାଲିଥାଏ । ଦେଶର ବଡ଼ ବଡ଼ ପତ୍ରପତ୍ରିକାରେ ସେସବୁ ବାହାରୁ ଥାଏ । ଆଜାଦ୍ ଧୀରେ ଧୀରେ ଚାରିଆଡ଼େ ଜଣାଶୁଣା ହୋଇ ଯାଉଥାଆନ୍ତି । 'ଲିୟାନୁଲ ସିଦ୍ଦିକ୍' ପତ୍ରିକା ବାହାରିବା ପରେ ଲାହୋର ଠାରେ ଦେଶର ପଣ୍ଡିତମାନେ ପହିଲେ ତାଙ୍କୁ ଦେଖିବାକୁ ପାଇଲେ । ଜଣେ ବଡ଼ ପଣ୍ଡିତ ହିସାବରେ ତାଙ୍କର ନାଁ ହୋଇଗଲା ।

ଏହି ସମୟରେ ତାଙ୍କ ଜୀବନର ଆଉ ଦୁଇଟି ଦୁଃଖ ଘଟିଗଲା ।

ବାହାରକୁ ଯିବାର ଗୋଟିଏ ସୁଯୋଗ ଆସିଲା । ସେ ଆଉ ତାଙ୍କ ବଡ଼ ଭାଇ ବାଗ୍‌ଦାଦ୍‌ଠାରେ ପହଞ୍ଚିଲେ । ସେଠି ଆଜ୍ଞାଦ୍‌ଙ୍କ ଦେହ ଏତେ ଖରାପ ହେଲା ଯେ, ସେ ଅଧାବାଟରୁ ଘରକୁ ଫେରିବାକୁ ବାଧ ହେଲେ । ଭାଇ ଆଗକୁ ଗଲେ । ତେବେ ସେ ବି ଅସୁସ୍ଥ ହୋଇ ଫେରିଲେ । ସେଇଥିରେ ତାଙ୍କର ମରଣ ହେଲା । ବାପା ସେଇ ଦୁଃଖରେ ବିଛଣା ଧରିଲେ । ଆଜ୍ଞାଦ୍‌ଙ୍କୁ ବି କମ୍ କଷ୍ଟ ହୋଇନଥିଲା । ତେବେ ସେ ମନର ଦୁଃଖ ମନରେ ମାରି ବାପାଙ୍କ ସେବାରେ ଲାଗିଲେ ।

ଆସ୍ତେ ଆସ୍ତେ ପରିବାରର ଦାୟିତ୍ୱ ବଢୁଛି । ବାପା ବିଛଣାରେ ପଡ଼ିଛନ୍ତି । ରୋଜଗାରର କିଛି ଗୋଟିଏ ବାଟ ଧରିବାକୁ ସେ ବମ୍ବେରେ ପହଞ୍ଚିଲେ । ସେଇଠି ଗୋଟିଏ ପତ୍ରିକା ଚଳାଇବାର ଦାୟିତ୍ୱ ତାଙ୍କୁ ମିଳିଲା । ପତ୍ରିକା ବାହାରେ ଅମୃତସରରୁ । ସେଠିକି ଯିବାକୁ ପଡ଼ିବ । ଗଲେ ବି । ଏଣେ ଭାଇଙ୍କର ମରଣ ହେଲା । ବାପା ଏକୁଟିଆ । ସେ ତାଙ୍କୁ ଅମୃତସରରେ ରହିବା ପାଇଁ ଅନୁମତି ଦେଲେ ନାହିଁ । କ'ଣ କରିବେ ? ବାପା ଯେତେବେଳେ ରାଜି ନୁହନ୍ତି, ସେତେବେଳେ କେମିତି ଅବା ସେ ସେଠି ରହିବେ ?

କଲିକତା ଫେରି ଆସିବାକୁ ବାଧ ହେଲେ ।

ସେତେବେଳକୁ ତାଙ୍କୁ ଅଠରବର୍ଷ ବୟସ ।

## ସୁଅ ମୁହଁରେ

କଲିକତା ଫେରିଆସି ସେ ପୁଣି ଗୋଟିଏ ପତ୍ରିକା ସହିତ ଜଡ଼ିତ ହୋଇଗଲେ । ତେବେ ବେଶୀ ଦିନ ସେଠି ରହି ପାରିଲେ ନାହିଁ । ମାଲିକ ପକ୍ଷ ସହିତ ତାଙ୍କର ମନ ମିଳିଲା ନାହିଁ । ଇଏତ କେବେ କାହାରି ପାଖରେ

ମୁଣ୍ଡ ନୁଆଁଇ ନାହାନ୍ତି । ମାଲିକ କଥାରେ ଭୁଲ୍‌କୁ ଠିକ୍ ବୋଲି କହିବାକୁ ଶିଖି ନାହାନ୍ତି । ଚାକିରି କରିବେ କଣ ? ଚୁପ୍‌ଚାପ୍ ଘରକୁ ଫେରିଲେ ।

ଏ ଭିତରେ ଦେଶର ମୁସଲମାନମାନେ ଯୋଉଠି ଯେତେ ସଂସ୍ଥା ଗଢୁଥିଲେ ସେଠିକୁ ଆଜାଦ୍‌ଙ୍କୁ ଲୋଡ଼ା ଯାଉଥିଲେ । ସେ ଯେ ଜଣେ ଠିକଣା ଲୋକ, ଆଉ ଖାରା କଥା କହନ୍ତି, ଏ କଥା ସମସ୍ତେ ଜାଣି ସାରିଥିଲେ । ୧୯୦୮ ମସିହାରେ ତାଙ୍କୁ ପୁଣି ଥରେ ବାହାରକୁ ଯିବାର ସୁଯୋଗ ମିଳିଲା । ସେ ଇରାକ୍, ମିଶର, ସିରିଆ, ତୁରସ୍କ ପ୍ରଭୃତି ଦେଖି ବିଲାତ ଯିବାକୁ ଫ୍ରାନ୍ସରେ ଯାଇ ପହଞ୍ଚିଲେ । ଆରବ ଦେଶଗୁଡ଼ିକରେ ଶିକ୍ଷାର ଯେଉଁ ବ୍ୟବସ୍ଥା ଥିଲା, ତାକୁ ଦେଖି ତାଙ୍କର ମନ ଭାରି ଖରାପ ହୋଇଗଲା । ସେ କଥା ସେଠି ସେ କହିଲେ ବି ।

ବାପାଙ୍କ ଦେହ କଥା ଶୁଣି ତାଙ୍କୁ ଫ୍ରାନ୍ସରୁ ଦେଶକୁ ଫେରି ଆସିବାକୁ ପଡ଼ିଲା । ଖୈରଦ୍ଦିନ ବଞ୍ଚିଲେ ନାହିଁ । ବାପା ଥିଲେ ଆଜାଦ୍‌ଙ୍କ ପାଇଁ ସବୁ । ତାଙ୍କରି ପାଇଁ ସେ ମା' ଓ ଭାଇଙ୍କ ମରଣ ଦୁଃଖକୁ ଭୁଲିଥିଲେ । ଆଜି ସେ ନାହାନ୍ତି । ସାରା ଦୁନିଆ ତାଙ୍କୁ ଦେଖାଯାଉଛି ଅନ୍ଧାର ।

ଆଜାଦ୍ ଦୁଃଖ ଭୁଲିବାକୁ ବହୁତ ଚେଷ୍ଟା କଲେ । କାମଦାମରେ ନିଜକୁ ବ୍ୟସ୍ତ ରଖିବାକୁ ଲାଗିପଡ଼ିଲେ । ତେବେ କଥାଟା ଏତେ ସହଜ ନଥିଲା । ଏମିତିରେ ବର୍ଷେ ଖଣ୍ଡେ ଚାଲିଗଲା ।

ଏହି ସମୟରେ ଦେଶ ଆଡ଼କୁ ନଜର ଦେବାକୁ ତାଙ୍କୁ ବେଳ ମିଳିଲା । ଦେଶ ଛାଡ଼ି ଚାଲିଯିବା ପାଇଁ ଇଂରେଜମାନଙ୍କୁ ଥରକୁ ଥର କୁହାଯାଇଛି । ତେବେ ସେମାନେ ମାଡ଼ି ମକଚି କେମିତି ହେଲେ

ରହିଯାଉଛନ୍ତି । ଏଣିକି ଦେଶର ଲୋକେ ଚତୁର ହେଲେଣି । ବେଶୀ ଦିନ ଆଉ ସେମାନଙ୍କୁ ଦବାଇ ରଖାଯାଇ ପାରିବ ନାହିଁ । ଏକଥା ସରକାର ବୁଝିଲେଣି । ଦେଶ ଭିତରେ ଫାଙ୍କ ବଢ଼ାଇବାକୁ ସେମାନେ ବାଟ ଖୋଜିଲେ । ବେଶୀ ବେଳ ବି ଲାଗିଲା ନାହିଁ । ମୁସଲମାନମାନଙ୍କୁ ଟିହାଇ ସରକାର ଏଥର ଗୋଟିଏ ନୂଆ ପେଞ୍ଚ ବାହାର କଲେ ।

ମୁସଲମାନମାନେ ଦିନେ ବାହାରୁ ଏଠାକୁ ଆସିଥିଲେ । ତେବେ ଅନେକ ଦିନ ରହିଯିବା ଫଳରେ ଏ ଦେଶ ହିନ୍ଦୁମାନଙ୍କ ଭଳି ସେମାନଙ୍କର ବି ହୋଇସାରିଥିଲା । ତେବେ ଏତେ ଦିନ ଯାଏ, ଏଥିପାଇଁ କିଛି ଅସୁବିଧା ହୋଇ ନଥିଲା । ହିନ୍ଦୁ ମୁସଲମାନ କାନ୍ଧକୁ କାନ୍ଧ ମିଶାଇ ଏକାଠି ଚାଲିଥିଲେ । ଜଣେ ଯେ ଆଉ ଜଣକ ଠାରୁ ଅଲଗା ଏ କଥା କାହାରି ମନରେ ନଥିଲା ।

ଇଂରେଜମାନେ ମୁସଲମାନମାନଙ୍କ ମନରେ ଏଇ ଚିନ୍ତାଟିକୁ ପୂରେଇଦେଲେ । ତେଣିକି ସବୁ କଥା ଆପେ ଆପେ ଚାଲିଲା । ୧୯୦୬ ବେଳକୁ 'ମୁସ୍‌ଲିମ୍ ଲିଗ୍' ବୋଲି ଦଳଟିଏ ଗଢ଼ା ହୋଇଗଲା । ଏହାରି ତରଫରୁ ମୁସଲମାନମାନେ ଯେ ଗୋଟିଏ ଅଲଗା ଜାତି ଏ କଥା ମାନି ନେବାକୁ ସରକାରଙ୍କୁ କୁହାଗଲା ।

ସରକାର ତ କହିଲା ଭଳି ଅନେଇ ବସିଥିଲେ । ଚଟ୍ କରି ସେମାନଙ୍କର ସବୁ କଥାରେ ରାଜି ହୋଇଗଲେ । ହିନ୍ଦୁ ମୁସଲମାନ ମାନଙ୍କ ଭିତରେ ପହିଲି ବିଷମଞ୍ଜିଟି ପୋତା ହୋଇଗଲା । ୧୯୨୦ ମସିହାରେ ଜିନ୍ନା କଂଗ୍ରେସ ଛାଡ଼ି ଆସି ମୁସ୍‌ଲିମ୍‌ଲିଗ୍‌ରେ ଯୋଗ ଦେଲେ । ବିଷ ଯେ ଦେଶର ଶିରାରେ କେତେବାଟ ମାଡ଼ି ଗଲାଣି,

ଏଥର ତାହା ଜଣାଗଲା । ଢେଉ ଭଳି ବିଷର ସ୍ରୁଅ ଦେଶର ଚାରିଆଡ଼େ ମାଡ଼ିଗଲା । ଅଲଗା ଏକ ରାଜ୍ୟର ଦାବି ଏଥର ଖୋଲାଖୋଲି ଶୁଣାଗଲା ।

ଆଜାଦ୍ ମୁସଲମାନ ଥିଲେ । ତେବେ ସେ ଦୁଇ ଜାତି ଭିତରେ ପାଚେରୀ ଠିଆ ହେଉ - ଏ କଥା କେବେ ବି ଚାହୁଁ ନ ଥିଲେ । ଯେଉଁ ମୁସଲମାନ ନେତା ମାନେ ଏ କଥା କହୁଥିଲେ, ସେମାନଙ୍କୁ ତେଣୁ ସେ ନିନ୍ଦା କରିବାକୁ ଛାଡୁ ନ ଥିଲେ । ଇଂରେଜମାନେ ତ ଏ ନାଟର ଗୋବର୍ଦ୍ଧନ । ଆଜାଦ୍ ସେମାନଙ୍କୁ ବି ବାଦ୍ ଦେଲେ ନାହିଁ । କେତେଜଣ ଶିକ୍ଷିତ ମୁସଲମାନ ଗୋଟାଏ ଜାତିକୁ ଶିଖେଇ ଭୁଲ୍ ବାଟରେ ନେଇ ଯାଉଥିବାରୁ ତାଙ୍କ ମନରେ ଭାରି କଷ୍ଟ ହେଉଥାଏ । ନିଜ ଲେଖାରେ ସେ ସେଇ କଥା କହୁଥାଆନ୍ତି । ଛୋଟ ଛୋଟ ଫାଙ୍କ କଥା ଭୁଲି ଯାଇ ଭାଇ ଭାଇ ଭଳି ରହିବା ପାଇଁ ଦୁଇପକ୍ଷଙ୍କୁ ଜଣାଉଥାଆନ୍ତି ।

ସେ କହୁଥାନ୍ତି ଭାରତ ଗୋଟିଏ ଦେଶ । ହିନ୍ଦୁମୁସଲମାନ ହେଉଛନ୍ତି ଏ ଦେଶର ଦୁଇଟି ହାତ । ଏକାଠି କାମ କଲେ ଦେଶର ବଳ ବଢ଼ିବ । କେତେକ ମୁସଲମାନ ଏଥିପାଇଁ ତାଙ୍କୁ ବଧାଇ ଜଣାଇଲେ । ସେମାନେ ସବୁବେଳେ ତାଙ୍କ ପାଖରେ ଠିଆ ହେବେ ବୋଲି କହିଲେ ।

ଏ ସବୁ ଘଟଣା ଘଟିବା ଆଗରୁ ବି ଆଜାଦ୍ ଦେଶ କଥା ବହୁତ ଭାବୁଥିଲେ । ୧୯୦୫ ମସିହାରେ ଯେତେବେଳେ ସରକାର ବଙ୍ଗ ଦେଶକୁ ଦୁଇଭାଗ କରିଦେଲେ, ସେତେବେଳେ ଦେଶରେ ଏଥିପାଇଁ ବହୁ ଗଣ୍ଡଗୋଳ ଲାଗିଥିଲା । ଆଜାଦ୍ ମଧ୍ୟ ସେ ସମୟରେ ବିପ୍ଳବୀମାନଙ୍କ ସାଙ୍ଗରେ ମିଶିଥିଲେ । ସେମାନଙ୍କ ପାଇଁ କିଛି କିଛି କାମ

ବି କରିଥିଲେ । ବିଦେଶ ଯାଇଥିଲା ବେଳେ କେତେଜଣ ନେତାଙ୍କ ସଙ୍ଗେ ଦେଖାକରି ସେମାନଙ୍କୁ ଭାରତ କଥା ବୁଝାଇ ଥିଲେ । ତାଙ୍କର କେବଳ ଗୋଟିଏ ଲକ୍ଷ୍ୟ ଥିଲା । ଯେମିତି ହେଲେ ଇଂରେଜମାନଙ୍କୁ ଦେଶରୁ ତଡ଼ିବାକୁ ହେବ । ହିନ୍ଦୁ-ମୁସଲମାନ ଦୁଇ ଜାତି ଏକାଠି ହୋଇ ଏକାମନରେ ଏଥିପାଇଁ କାମ କଲେ, ଏ କଥା ସମ୍ଭବ ହେବ । ଏଇଆ ସେ ଭାବୁଥିଲେ । ତାଙ୍କରି ଚେଷ୍ଟାରେ ମୁସଲିମ୍-ଲିଗ୍ ଆଉ କଂଗ୍ରେସ ଦଳ ମଧ୍ୟରେ କିଛି ଦିନ ପାଇଁ ବୁଝାମଣା ବି ହୋଇଥିଲା ।

ମାତ୍ର ଆଜାଦ୍ ଜାଣିଥିଲେ, ଏ ସବୁ ଖାଲି ଧର୍ମକୁ ଆଖିଠାର ମାରିବା ଭଳି କଥା । ନିଆଁ କୁହୁଳୁଛି । କେତେବେଳେ ହୁତ୍ କରି ଜଳି ଉଠିବ ।

## ନିଆଁ ଜଳିଲା

ମୂଳରୁ ସରକାରଙ୍କ କଡ଼ା ନଜର ଆଜାଦ୍‌ଙ୍କ ଉପରେ ରହିଥିଲା । ଭେଦିଆମାନେ ତାଙ୍କୁ ସବୁବେଳେ ଘେରି ରହିଥିଲେ । ସେ କ'ଣ କଲେ, କୁଆଡ଼ୁକୁ ଗଲେ, କାହା ସାଙ୍ଗରେ ଦେଖା କଲେ, ଏ ସବୁ ଟିକିନିଖି ଖବର ନେଇ ସରକାରଙ୍କ କାନରେ ପୋତୁଥିଲେ । ଆଜାଦ୍ ଯେ ଜଣେ ସରକାର ଦ୍ରୋହୀ ମଣିଷ ଏ କଥା ଜାଣିଯାଇ ଥିଲେ । ଏଇଥି ପାଇଁ ୧୯୧୬ ମସିହାରେ ଆଜାଦ୍ ପହିଲେ ଗିରଫ୍ ହେଲେ । ତାଙ୍କୁ ଜେଇଲ୍‌ଖାନାକୁ ପଠାଇ ଦିଆଗଲା ।

ଏ ଭିତରେ ଦେଶର ଅବସ୍ଥା ଦିନକୁ ଦିନ ଖରାପ ହେବାରେ ଲାଗିଥାଏ । ପ୍ରଥମ ମହାଯୁଦ୍ଧ ଆରମ୍ଭ ହେଲା । ଭାରତ ଇଂରେଜମାନଙ୍କୁ ସାହାଯ୍ୟ କଲା । ଗାନ୍ଧିଜୀ ବି ଏଥିରେ ରାଜି ହୋଇଥିଲେ । ଯୁଦ୍ଧ ସରିବା

ପରେ ଦେଖାଗଲା, ଯେଉଁ ଆଶା ନେଇ ଭାରତ ଯୁଦ୍ଧରେ ପଶିଥିଲା, ସେ ସବୁ କିଛି ହେଲା ନାହିଁ । ଇଂରେଜମାନେ ଆଗ ଭଳି ଶାସନ ଚଳାଇଲେ । ଲାଭ ଭିତରେ ଭାରତକୁ ଡରାଇ ରଖିବା ପାଇଁ ଆଉ କେତୋଟି ଆଇନ୍ ଗଢ଼ା ହୋଇଗଲା । ଜାଲିଆନ୍ ୱାଲାବାଗଠାରେ ନିରୀହ ଲୋକଙ୍କ ଉପରେ ବିନା କାରଣରେ ଗୁଳି ଚଳାଇ ତିନି ଶହ ଅଣାଅଶି ଜଣଙ୍କୁ ମାରି ଦିଆଗଲା । ସେଇଠୁ ଆରମ୍ଭ ହେଲା ଅସହଯୋଗ ।

ଏଣେ ତୁରସ୍କର ମୁସଲମାନ ଖଲିଫାଙ୍କୁ ଅପମାନ ଦେବାରୁ ଭାରତର ମୁସଲମାନମାନେ ଇଂରେଜମାନଙ୍କ ଉପରେ ରାଗି ଉଠିଲେ । ଖିଲାଫତ୍ ଆନ୍ଦୋଳନ ଆରମ୍ଭ ହେଲା । ଗାନ୍ଧିଜୀ ଏଥିସହିତ ଏକମତ ହେଲେ । କଂଗ୍ରେସ ଆଉ ମୁସ୍‌ଲିମ୍ ଲିଗ୍ ଭିତରେ ଯେଉଁ ମୁହଁ ଫୁଲାଫୁଲି ଥିଲା, ତାହା ନରମ ହୋଇ ଆସିଲା । ଆଜାଦ୍ ତ ମୂଳରୁ ଭୁଲ୍ ଦେଖିଲେ ପାଟି କରି ଆସିଛନ୍ତି । ତେଣୁ ସେ ଏଇ ଖିଲାଫତ୍ କଥାକୁ ନେଇ ଖୁବ୍ ଲେଖାମାନ ଲେଖିଲେ । ଯେଉଁମାନେ ଆନ୍ଦୋଳନରେ ମାତି ଥିଲେ, ଏଥିରେ ସେମାନଙ୍କର ମନର ବଳ ବଢ଼ିଲା । ଆଜାଦ୍ ବି ଜଣାଶୁଣା ହୋଇଗଲେ ।

ସରକାର ମୂଳରୁ ଆଜାଦ୍‌ଙ୍କ ଉପରେ କଡ଼ା ନଜର ରଖିଥିଲେ । ଏବେ ତାଙ୍କର ପତ୍ରିକା ବାହାର କରିବାରେ ବହୁତ ବାଧାବିଘ୍ନ ଆରମ୍ଭ ହେଲା । ଗୋଟାଏ ଅସୁବିଧା ହଟାଇଲା ବେଳକୁ ନୂଆ ଅସୁବିଧା ଦେଖା ଦେଲା । ପତ୍ରିକା ସିନା ବାହାରି ପାରିଲା ନାହିଁ, ତେବେ ଆଜାଦ୍ ଏଥିରେ ଭାଙ୍ଗି ପଡ଼ିଲେ ନାହିଁ । ଗୋଟାଏ ବାଟରେ କଣ୍ଟା ପଡ଼ିଚି ତ କ'ଣ

ହେଲା ? ଆଗରେ ଆଉ ଦଶଟା ବାଟ ଖୋଲା ପଡ଼ିଚି । ଏ ପତ୍ରିକା ବନ୍ଦ ହୋଇଗଲା, ଯାଉ । ନୂଆ ପତ୍ରିକା ବାହାର କରିବାରେ ଅସୁବିଧା କ'ଣ ? ତାଙ୍କର ଯାହା କହିବାର କଥା ସେ ଲୋକଙ୍କୁ ନିଶ୍ଚେ କହିବେ ।

ପତ୍ରିକା ବାହାରିଲା । ଏଥର ଆଜାଦ୍ ଖୋଲାଖୋଲି ଭାବରେ ସରକାରଙ୍କର ନିନ୍ଦା କଲେ । ସ୍ୱାଧୀନତା ପାଇଁ ଦାବି ଜଣାଇଲେ । ଦେଶର ଯାହା ଅବସ୍ଥା ସେଥିରେ ଆଉ କେତେଦିନ ଯାଏଁ ବା ଚୁପ୍ ହୋଇ ରହି ଥାଆନ୍ତେ ? ନିଆଁକୁ ନଡେଇଁ ପଡ଼ିଲେ, ଖାଲି ତା'ର ଧାସରେ କେତେଦିନ ଛଟପଟ ହୋଇଥାଆନ୍ତେ ?

ସରକାର ବି ଚୁପ୍ ରହିଲେ ନାହିଁ । ସେ ବଙ୍ଗ ଦେଶରେ ରହିପାରିବେ ନାହିଁ ବୋଲି ଆଦେଶ ଦେଲେ । ଲଢ଼େଇ ଆରମ୍ଭ ହୋଇଗଲା ।

କଲିକତା ଛାଡ଼ିବାକୁ ପଡ଼ିଲା । ଏଡ଼େ ବଡ଼ ଦେଶ । କୋଉଠି ହେଲେ ତ ମୁଣ୍ଡ ଗୁଞ୍ଜିବାକୁ ଟିକିଏ ଜାଗା ମିଳିବ । ରାଞ୍ଚି ଚାଲିଗଲେ । ସେଇଠି ଗୋଟିଏ ଗାଁରେ ରହିଲେ । ପତ୍ରିକା ବାହାର କରିବା ପାଇଁ ଅଣ୍ଟାଭିଡ଼ିଲେ । ପତ୍ରିକା ବାହାରି ପାରିଲା ନାହିଁ ।

ଆଜାଦ୍ ପରିବାରଠାରୁ ଦୂରରେ ଏକୁଟିଆ ଗାଁରେ ରହିଥାଆନ୍ତି । ଗୋଟାଏ ପ୍ରକାରର ନଜର ବନ୍ଦୀ ଭଳି ଥାଆନ୍ତି କହିଲେ ଚଳେ । ସମୟ ମିଳୁଥାଏ । କୋରାନ୍ ଅନୁବାଦରେ ମନ ଲଗାଇ ଦିଅନ୍ତି । ଟିକିଏ ଶାନ୍ତି ମିଳୁଥାଏ । ହେଲେ ସରକାର ତାଙ୍କୁ ସେମିତି ରଖାଇ ଦେଉ ନଥାନ୍ତି । ଥରକୁ ଥର ତାଙ୍କ ଘର ଖାନ୍ ତଲାସ୍ ହେଉଥାଏ । ଥରେ କୋରାନର

ଅନୁବାଦ କାଗଜ ପତ୍ର ଜବତ ହୋଇଗଲା । ଆଜାଦ୍ ସେତକ ଫେରାଇ ଦେବା ପାଇଁ ସରକାରଙ୍କଠାରେ ଦାବି ଜଣାଇଲେ । ସରକାର ଶୁଣିଲେ ନାହିଁ । ଆଜାଦ୍ ଚୁପ୍ ନ ହୋଇ ପୁଣି ଥରେ ମୂଳରୁ କାମ ଆରମ୍ଭ କରି ଶେଷ କରିଦେଲେ । ଏଣେ ବଙ୍ଗ ଦେଶରୁ ତାଙ୍କର ବାସନ୍ଦକୁ ଉଠାଇ ନେବା ପାଇଁ ସରକାରଙ୍କ ଉପରେ ଚାପ ପଡୁଥାଏ । ସରକାର ଶେଷରେ ଲୋକମତ ପାଖରେ ମୁଣ୍ଡ ନୁଆଁଇଲେ । ୧୯୨୦ ରେ ବାସନ୍ଦ ଉଠାଇ ନିଆଗଲା ।

ଆଜାଦ୍ କଲିକତା ଫେରିଲେ । 'ପୈଗାମ୍' ବୋଲି ନୂଆ ପତ୍ରିକାଟିଏ ବାହାର କଲେ । ଏହାର ଅର୍ଥ ହେଉଛି 'ନୂଆସନ୍ଦେଶ' । ଏଇଥିରେ ସେ ଦେଶବାସୀଙ୍କୁ ଦେଶର ହାଲଚାଲ ବିଷୟରେ ଜଣାଇଲେ । ଲୋକେ ବି ଖୁବ୍ ଆଗ୍ରହରେ ତାକୁ ପଢ଼ିଲେ । ବେଳେ ବେଳେ ଗାନ୍ଧିଜୀଙ୍କ ସହିତ ତାଙ୍କର କଥାବାର୍ତ୍ତା ହେଉଥାଏ । ଆଜାଦ୍ ଏଥର ଅସହଯୋଗ ଆନ୍ଦୋଳନରେ ପୂରାପୂରି ଝାସ ଦେଲେ ।

ଧୀରେ ଧୀରେ ଅନ୍ୟ ନେତାମାନଙ୍କ ସହ ତାଙ୍କର ଚିହ୍ନା ପରିଚୟ ହେଲା । କଂଗ୍ରେସର ନୂଆନୂଆ କାମରେ ସେ ଭାଗ ନେଲେ । ତାଙ୍କୁ ଯାହା ଭଲ ଲାଗୁଥାଏ, ସେ କଥା ବି କହୁଥାଆନ୍ତି । ଗାନ୍ଧିଜୀ ତାଙ୍କ କାମ କରିବାର ଢଙ୍ଗକୁ ବେଶ୍ ପ୍ରଶଂସା କରୁଥାଆନ୍ତି । ଆଜାଦ୍ ନିଜେ ଖିଲାଫତ୍ ଆନ୍ଦୋଳନକୁ କଂଗ୍ରେସ ଭିତରକୁ ଟାଣି ଆଣୁଥାଆନ୍ତି । ଗୋଟାଏ ସମୟ ଆସିଲା, ଯେତେବେଳେ ଦୁଇ ଆନ୍ଦୋଳନ ମିଶି ଗୋଟାଏ ହୋଇଗଲା । ତା'ପରେ ଆଜାଦ୍ ସଭା ସମିତିରେ ଭାଗ ନେଇ କଂଗ୍ରେସର ନୀତି କଥା କହିବାକୁ ଲାଗିଲେ । ଦେଶର ବେଶୀ ଭାଗ

ମୁସଲମାନ ଆଜାଦ୍‌ଙ୍କୁ ପସନ୍ଦ କରୁଥିଲେ । ଏଥିପାଇଁ ତାଙ୍କୁ ଗୋଟିଏ ଉପାଧି ଦେବା ପାଇଁ ବି ଠିକ୍ କରାହୋଇଥିଲା । ମାତ୍ର ନିଜେ ଆଜାଦ୍ ଏଥିରେ ରାଜି ହେଲେ ନାହିଁ ।

ସରକାର ଦେଖିଲେ ଆଜାଦ୍‌ଙ୍କୁ ଆଉ ଦେଶ ସାରା ସମୟ ବାହାରେ ଏମିତି ବୁଲିବାକୁ ଦିଆଗଲେ, ସେ ସରକାରଙ୍କ ପାଇଁ ନୂଆ ନୂଆ ବିପତ୍ତିମାନ ଡାକି ଆଣିବେ । ତେଣୁ ତାଙ୍କୁ ଗିରଫ୍ କରିବାକୁ ଠିକଣା କରାଗଲା ।

ସେଦିନ ଆଜାଦ୍ ନିଜ ଘରେ ବସି କାମ କରୁଥାଆନ୍ତି । ଡେପୁଟି କମିଶନର ପାହିଆର ଜଣେ କର୍ମଚାରୀ ତାଙ୍କ ପାଖକୁ ଆସିଲେ । ତାଙ୍କ ସାଙ୍ଗରେ ଯିବାକୁ ଅନୁରୋଧ କଲେ । ଆଜାଦ୍ କଥାଟା ବୁଝିଗଲେ । ଖୁବ୍ କମ୍ ସମୟ ଭିତରେ ନିଜକୁ ତିଆରି କରିନେଲେ । କର୍ମଚାରୀଙ୍କ ସାଙ୍ଗରେ ବାହାରି ପଡ଼ିଲେ ।

ସେଦିନ ୧୯୨୧ ମସିହା ଡିସେମ୍ବର ମାସ ଏକୋଇଶି ତାରିଖ ।

ଚାଦରଟିଏ ସାଙ୍ଗରେ ଧରି ଆଜାଦ୍ ଥାନାରେ ପହଞ୍ଚିଲେ । କିଛି ସମୟ ଭିତରେ ଦେଶବନ୍ଧୁ ଚିତ୍ତରଞ୍ଜନ ବି ଧରା ହୋଇ ସେଠାକୁ ଅଣାଗଲେ । ଦୁହିଁଙ୍କୁ ଜେଲ୍ ପଠାଇ ଦିଆଗଲା ।

ସରକାର ନ୍ୟାୟ ପରାୟଣ । ବିନା ୱାରେଣ୍ଟରେ ଆଜାଦ୍‌ଙ୍କୁ ସିନା ଧରି ନେଇ ଗଲେ । ବିନା ବିଚାରରେ ବନ୍ଦୀ କରି ରଖିଲେ ଦୁନିଆ କ'ଣ କହିବ ? ବିଚାର ତ ଯେମିତି ହେଲେ କରିବାକୁ ପଡ଼ିବ । ବିଚାର ଧିମେଇ ଧିମେଇ ଚାଲି ଶେଷରେ ଫୈସଲା ଶୁଣାଇ ଦିଆଗଲା । ବର୍ଷକ ପାଇଁ ଜେଲ୍ । ଚିତ୍ତରଞ୍ଜନଙ୍କ ଭାଗ୍ୟ ଆଉ ଟିକିଏ ସଳଖ ଥିବ ପରା ! ତାଙ୍କୁ

ମିଳିଲା ଛ'ମାସ ମିଆଦ । ଆଜାଦ୍ ତ ଖୁସିରେ ଜେଲ୍ ଚାଲିଗଲେ । ପଛରେ ଛାଡ଼ି ଦେଇଗଲେ ଅସୁମାରୀ କାମ । ଖିଲାଫତ୍ କମିଟିର ଯାହା କାମ ତାକୁ ସବୁ ତୁଲାଇଲେ ତାଙ୍କ ବେଗମ୍ ଯୁଲେଖା ।

ବର୍ଷକ ଭିତରେ ସ୍ୱରାଜ ଆସିବ - ଗାନ୍ଧିଜୀଙ୍କ ଏଇ କଥା ଉପରେ ଭରସା କରି ଲୋକେ ନିଆଁକୁ ଡେଇଁଥିଲେ । ହଜାର ହଜାର ସଂଖ୍ୟାରେ ଜେଲ୍‌କୁ ଯାଉଥିଲେ । ଚାହୁଁ ଚାହୁଁ ଗୋଟିଏ ବର୍ଷ ବିତିଗଲା । ସ୍ୱାଧୀନତା ତ ଆସିଲା ନାହିଁ । ଏଣେ ଚୌରିଚୌରାରେ ପୁଲିସ ମରା ଘଟଣାକୁ ନେଇ ଗାନ୍ଧିଜୀ ବି ଆନ୍ଦୋଳନ ବନ୍ଦ କରିଦେଲେ । ଲୋକେ ଭାରି ଅସନ୍ତୁଷ୍ଟ ହେଲେ ।

୧୯୨୩ ରେ ଆଜାଦ୍‌ଙ୍କର ମିଆଦ୍ ଶେଷ ହେଲା । ସେ ବାହାରକୁ ଆସିଲେ । ଖିଲାଫତ୍ ଆନ୍ଦୋଳନର କାମ ନିଜ ହାତକୁ ନେଲେ । ହିନ୍ଦୁ-ମୁସଲମାନଙ୍କୁ ମିଳାଇ ଦେବା ଥିଲା ତାଙ୍କର ଉଦ୍ଦେଶ୍ୟ । ସେଇ ବର୍ଷ ଦିଲ୍ଲୀଠାରେ କଂଗ୍ରେସର ଯେଉଁ ସଭା ବସିଲା, ସେଥିରେ ସେ ସଭାପତି ହେଲେ । ହିନ୍ଦୁ-ମୁସଲମାନ ଏକତା କଥା କହିଲେ । ଏଇ ସମୟରେ ସେ ଯେଉଁଠିକି ଯାଉଥିଲେ, ସେଠି ଏଇ ଗୋଟିଏ କଥା କହୁଥିଲେ । ଦେଶ ପାଇଁ ସତରେ ସେ କେତେ ଭାବୁଥିଲେ, ଏଇଥିରୁ ତାହା ଜଣାପଡ଼ିବ ।

୧୯୨୯ ମସିହାରେ ଲାହୋରଠାରେ କଂଗ୍ରେସ ସଭା ବସିଲା । ଏଥିରେ ସଭାପତି ହେଲେ ନେହେରୁ । ଏଇଠି 'ପୂର୍ଣ୍ଣ ସ୍ୱରାଜ' ନୀତିକୁ ଗ୍ରହଣ କରାଗଲା । ଆଜାଦ୍ ବି ଚୁପ୍ ହୋଇ ବସି ରହି ନଥିଲେ । ମୁସଲମାନମାନଙ୍କର ଗୋଟିଏ ଦଳଗଢ଼ି ଦେଶର ସ୍ୱାଧୀନତା

ଆନ୍ଦୋଳନରେ ହାତ ମିଳାଇବା ପାଇଁ ସେମାନଙ୍କୁ ତିଆରି କରୁଥିଲେ । ଏତିକିବେଳେ ଲବଣ ଆଇନ୍ ଭାଙ୍ଗିବାକୁ ଗାନ୍ଧିଜୀ ଡାକରା ଦେଲେ । ଶହ ଶହ ଲୋକ ଜେଲ୍ ଗଲେ । ମହାତ୍ମା ଗାନ୍ଧି ନିଜେ ବି ଦଣ୍ଡ ପାଇଲେ । ମିରଟ୍‌ରୁ ଧରା ହେଲେ ଆଜାଦ୍ । ଏଥର ତାଙ୍କୁ ଛଅମାସ ପାଇଁ ଜେଲ୍ ହେଲା । ତେବେ ବଡ଼ଲାଟଙ୍କ ସାଙ୍ଗରେ ଗାନ୍ଧିଜୀଙ୍କର ଗୋଟାଏ ବୁଝାମଣା ହୋଇଯିବାରୁ ବନ୍ଦୀମାନେ ଖଲାସ୍ ହେଲେ ।

ଆଜାଦ୍ ବି ବାହାରକୁ ଆସିଲେ । ସରକାରଙ୍କ ନିମନ୍ତ୍ରଣରେ ଗାନ୍ଧିଜୀ ବିଲାତ ଗଲେ । ଏଠାରେ ସମସ୍ତେ ଆଶା କରି ବସିଲେ ଯେ, ଗାନ୍ଧିଜୀ ନିଶ୍ଚେ ଏଥର ସ୍ୱାଧୀନତାର ଶୁଭ ଖବର ନେଇ ଆସିବେ । ମାତ୍ର ତାହା ହେଲା ନାହିଁ । ଗାନ୍ଧିଜୀ ଖାଲି ହାତରେ ଫେରିଲେ ।

ଏ ସମୟରେ ବି ଆଜାଦ୍ ସବୁବେଳେ ଲୋକଙ୍କୁ ସରକାରଙ୍କ ବିରୋଧରେ ମତାଇଲେ । ତେଣୁ ତାଙ୍କୁ ପୁଣି ଜେଲ୍‌କୁ ପଠାଇ ଦିଆଗଲା । ଆଇନ୍ ଭାଙ୍ଗିବା ଆନ୍ଦୋଳନ ପୁଣି ଥରେ ଆରମ୍ଭ ହେବାରୁ ସରକାର ଲୋକଙ୍କୁ ଜେଲ୍‌କୁ ପଠାଇବାକୁ ଲାଗିଲେ । ଲକ୍ଷେ କୋଡ଼ିଏ ହଜାର ଲୋକ ଏଇ ସମୟରେ ଜେଲ୍ ଗଲେ ।

୧୯୩୭ ମସିହାରେ ନୂଆ ଭାରତ ଶାସନ ଆଇନ୍ ଅନୁସାରେ କଂଗ୍ରେସ ଭୋଟ ଲଢ଼େଇରେ ଭାଗନେବ ବୋଲି ଠିକ୍ କଲା । ଆଜାଦ୍‌ଙ୍କୁ ଛଅଟି ପ୍ରଦେଶର ଭାର ଦିଆଗଲା । ସେଇସବୁ ରାଜ୍ୟରେ କଂଗ୍ରେସ ଜିଣିବାରୁ ନେତାମାନେ ଆଜାଦ୍‌ଙ୍କୁ ବହୁତ ପ୍ରଶଂସା କରିଥିଲେ । ମନ୍ତ୍ରୀସଭା ଗଢ଼ା ହେଲା । ଦୁଇବର୍ଷ ପର୍ଯ୍ୟନ୍ତ ସବୁ ଠିକ୍‌ଠାକ୍ ଚାଲିଲା । ଏତିକିବେଳେ ଜିନ୍ନା କହିଲେ ଯେ, କଂଗ୍ରେସ ଶାସନରେ

ମୁସଲମାନମାନଙ୍କ ଉପରେ ଅତ୍ୟାଚାର ବଢ଼ିଯାଇଛି । ସେମାନେ ଆଉ ବେଶିଦିନ ଚୁପ୍ ରହି ପାରିବେ ନାହିଁ । ଜିନ୍ନାଙ୍କ ମନକଥା ଆଜାଦ୍ ଠିକ୍ ବୁଝିଲେ । ମୁସଲମାନମାନଙ୍କୁ ଧରି ଜିନ୍ନା ତୁଚ୍ଛାଟାରେ ଗୋଟାଏ କଳି ପୂରେଇବାକୁ ଚାହାନ୍ତି । ଆଜାଦ୍ କଡ଼ା ଭାଷାରେ ଜିନ୍ନାଙ୍କ କଥାର ଜବାବ୍ ଦେଲେ । ଇଂରେଜ ସରକାର କଂଗ୍ରେସ ଭଲ ଶାସନ ଚଳାଇଛି ବୋଲି କହିଲେ । ଭୋଟରମାନଙ୍କ ଭିତରେ ସରକାର ସେତେବେଳେ ଜାତିଆଣ ଭାବ ପୂରେଇ ସେମାନଙ୍କୁ ଭାଗଭାଗ କରି ଦେବାକୁ ଚାହିଁଥିଲେ । ଗାନ୍ଧିଜୀ ଏ କଥାଟାକୁ ପସନ୍ଦ କଲେ ନାହିଁ । ଏଥିପାଇଁ ସେ ଅନଶନ ଆରମ୍ଭ କରିଦେଲେ । ଆଜାଦ୍ ବି ଏହାର ଫଳ କେବେ ଭଲ ହେବ ନାହିଁ ବୋଲି କହି ଗାନ୍ଧିଜୀଙ୍କ ପାଖରେ ଯାଇ ଠିଆହେଲେ । ଶେଷରେ ସରକାର ଗାନ୍ଧିଜୀଙ୍କ କଥା ମାନି ନେଇଥିଲେ ।

ଏହା ଭିତରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଗଲା । ସରକାର ଭାରତକୁ ଏଥିରେ ପୂରାଇବାରୁ ନେତାମାନେ ଖୁସି ହେଲେ ନାହିଁ । ଶାସନରୁ ଓହରି ଆସିବାକୁ କଂଗ୍ରେସ ଠିକଣା କଲା । ଯେଉଁଠି କଂଗ୍ରେସ ହାତରେ ଶାସନ ଥିଲା, ସେଠି ସେମାନେ ଇସ୍ତଫା ଦେଇଦେଲେ । ୧୯୪୦ ମସିହାରେ ବିହାରର ରାମଗଡ଼ଠାରେ କଂଗ୍ରେସ ସଭା ବସିଲା । ଆଜାଦ୍ ହେଲେ ଏହାର ସଭାପତି । ଏଠି 'ପୂର୍ଣ୍ଣ ସ୍ୱରାଜ' ଦାବି ପୁଣି ଉଠିଲା ।

ସେ ପଟେ ମୁସ୍‌ଲିମ୍ ଲିଗ୍‌ର ନେତା ଜିନ୍ନା ପାକିସ୍ତାନ ନିଶ୍ଚୟ ହେବ ବୋଲି ଦାବି କରିବାକୁ ଆରମ୍ଭ କରି ଦେଇଥାଆନ୍ତି । ଗାନ୍ଧିଜୀ ସତ୍ୟାଗ୍ରହର ଡାକରା ଦେବାରୁ ସରକାର ନେତାମାନଙ୍କୁ ବନ୍ଦୀ କରି

ଜେଲ୍‌ରେ ରଖିଲେ । ଆଜାଦ୍ ମଧ୍ୟ ଏହି ସମୟରେ ଗିରଫ୍ ହୋଇଥିଲେ । ତେବେ ସରକାରଙ୍କ ସହିତ ଆଲୋଚନା କରିବା ପାଇଁ ୧୯୪୧ ମସିହା ଅକ୍ଟୋବର ମାସରେ ନେତାମାନଙ୍କୁ ଛାଡ଼ି ଦିଆଗଲା । ଆଜାଦ୍ ଛାଡ଼ପାଇଲେ ।

ଏତିକିବେଳେ ବିଲାତ ସରକାର କ୍ରିପ୍‌ସ ବୋଲି ଜଣେ ଲୋକଙ୍କୁ ଭାରତର ନେତାମାନଙ୍କ ସାଙ୍ଗରେ କଥାବାର୍ତ୍ତା କରିବାକୁ ଭାରତ ପଠାଇଲେ । ଆପୋଷ ବୁଝାମଣା ପାଇଁ ଗୋଟାଏ ବାଟ ଫିଟାଇବାକୁ ତାଙ୍କୁ ପଠାଯାଇଥିଲା । କ୍ରିପସ୍ ବହୁ ସମୟ ଧରି ନେତାମାନଙ୍କ ସାଙ୍ଗରେ କଥାବାର୍ତ୍ତା କଲେ । ଦେଖାଗଲା ଯେ, ଭାରତ ପାଇଁ ତାଙ୍କର ସେ ଭଳି କିଛି ଚିନ୍ତା ନାହିଁ । ଭାରତ ସ୍ୱାଧୀନତାକୁ ଛାଡ଼ି ଆଉ କିଛି କଥାରେ ରାଜି ହେବା ଅବସ୍ଥାରେ ନଥିଲା । ଲୋକେ ବି ଅଧୈର୍ଯ୍ୟ ହୋଇ ପଡ଼ିଥିଲେ । ତେଣୁ କ୍ରିପସ୍ ଫେରିଗଲେ ।

ଆଜାଦ୍ ସେତେବେଳେ ବି କଂଗ୍ରେସର ସଭାପତି । ସେ ଭୟ କଲେ ଯେ, ଏଥର ସରକାର ନିଶ୍ଚେ ନେତାମାନଙ୍କୁ ଧରି ଜେଲ୍‌କୁ ପଠାଇ ଦେବ । ଯାହା ଯେମିତି କାମ ଆରମ୍ଭ ହୋଇଛି, ସେ ସବୁ ଅଧା ରହିଯିବ । ଲୋକଙ୍କର ବିଶ୍ୱାସ ତୁଟିଯିବ । ସେ ଭାବିଲେ, ଏତିକିବେଳେ କଂଗ୍ରେସ କିଛି କରିବା ପାଇଁ ଠିକଣା କରି ଲୋକଙ୍କୁ କହୁ । ତେଣିକି ନେତା ନଥିଲେ ବି ଲୋକେ ତାଙ୍କର ସେଇ ବାଟରେ କାମ କରିଯିବେ ।

ଗାନ୍ଧିଜୀ ହଠାତ୍ କିଛି ଗୋଟାଏ କରି ପକାଇବାକୁ କେବେ ପସନ୍ଦ କରନ୍ତି ନାହିଁ । କଥାଟା କଂଗ୍ରେସର ନେତାମାନଙ୍କ ଆଗରେ ପଡ଼ିଲା । ସେମାନେ ଆଉଥରେ ବଡ଼ଲାଟଙ୍କ ସାଙ୍ଗରେ କଥାବାର୍ତ୍ତା କରିବା ପାଇଁ

କହିଲେ । ଏଥିପାଇଁ ମୀରାବେନ୍‌ଙ୍କୁ ବଛା ଯାଇଥିଲା । ମୀରାବେନ୍ ବଡ଼ଲାଟଙ୍କ ସାଙ୍ଗରେ ଦେଖା କରିବାକୁ ଗଲେ । ତେବେ ଲାଟ୍ ତାଙ୍କୁ ଦେଖାଦେଲେ ନାହିଁ । ମୀରାବେନ୍ ନିରାଶରେ ଫେରିଲେ ।

ଗାନ୍ଧିଜୀ ସବୁ କଥା ଜାଣିଲେ । ବୁଝିଲେ ଯେ, ଆଉ କଥାବାର୍ତ୍ତାରେ ବେଳ ଗଡ଼ାଇବା ଠିକ୍ ହେବ ନାହିଁ । ଏଇ ହଉଚି, କାମର ବେଳ । କିଛି ଗୋଟାଏ କରିବାକୁ ହେବ । ବହୁତ ଭାବିବା ପରେ ସେ ନେତାମାନଙ୍କୁ ଡାକିଲେ । କଂଗ୍ରେସ ସଭା ଡାକି ଏଇ କଥା ଉପରେ କିଛି ହେଲେ ନିଷ୍ପତ୍ତି ନେବା ପାଇଁ ସେମାନଙ୍କୁ କହିଲେ । ଦିନ ଠିକଣା ହେଲା - ଅଗଷ୍ଟ ମାସ ଆଠ ତାରିଖ - ଜାଗାହେଲା ବମ୍ବେ ।

ଗୋଟିଏ କାରଣରୁ କଂଗ୍ରେସର ଏଇ ସଭା ଇତିହାସରେ ସୁନା ଅକ୍ଷରରେ ଲେଖା ହୋଇ ରହିଛି । ଏଇଠି ‘ଭାରତ-ଛାଡ଼’ ପ୍ରସ୍ତାବ ପାସ୍ ହୋଇଥିଲା । ସେଇ ସଭା-ଚଉତରା ଉପରୁ ଅଗଷ୍ଟ ଆଠ ତାରିଖ ଦିନ ଗାନ୍ଧିଜୀ ଇଂରେଜମାନଙ୍କୁ ଭାରତ ଛାଡ଼ି ଚାଲିଯିବା ପାଇଁ ଡାକରା ଦେଇଥିଲେ ।

**ଜୀବନକୁ ଆମେ ପାଣି ଛଡ଼ାଇବୁ**

ଆଜାଦ୍ କଂଗ୍ରେସର ସଭାପତି । ଆଠ ତାରିଖ ଆଗରୁ ତାଙ୍କୁ ବମ୍ବେରେ ପହଞ୍ଚିବାକୁ ପଡ଼ିବ । ସଭା ହେବା ଆଗରୁ ବହୁତ କାମ ଥାଏ । ସେଥିପାଇଁ ସଭାପତିଙ୍କର ରହିବା ନିହାତି ଜରୁରୀ । ଅଗଷ୍ଟ ତିନି ତାରିଖ ଦିନ ସେ ବମ୍ବେ ଯିବା ପାଇଁ ବାହାରିଲେ ।

ଯୁଲେଖାଙ୍କ ମନ ଗୋଳେଇ ଘାଣ୍ଟି ହେଉଥାଏ । ୧୯୦୧ ମସିହାରେ ତାଙ୍କୁ ହୋଇଥିଲା ଆଠ ବର୍ଷ । ସେତିକିବେଳେ ସେ ଆଜାଦ୍‌ଙ୍କ

ଘରକୁ ଆସିଥିଲେ । ସେଇଦିନୁ ସେ ବରାବର୍ ଆଜାଦ୍‌ଙ୍କ ପାଖେ ପାଖେ ଅଛନ୍ତି । ଛାଇ ଭଳି ତାଙ୍କ ପଛେ ପଛେ ଚାଲିଛନ୍ତି ଯେ, କେବେ ବି ଆଗକୁ ବଢ଼ି ବାଟ ଓଗାଳି ନାହାନ୍ତି । ଯେତିକି ପାରିଛନ୍ତି ତାଙ୍କ କାମରେ ହାତ ଲଗାଇଛନ୍ତି ।

ଆଜାଦ୍‌ଙ୍କର ଯାହା ଜୀବନ, ସେଥିରେ ଯେ ସେ ଠାଏ ସ୍ଥିର ହୋଇ ରହିଛନ୍ତି, ଏ କଥା ବି ନୁହେଁ । ବୟାଳିଶ ବର୍ଷ ହେଲା ସେ ତାଙ୍କୁ ଦେଖୁଛନ୍ତି । ହେଇ ଏଇଠି ଅଛନ୍ତି, ତ ଟିକିଏ ପରେ ଯାଇ ଉଠିଲେଣି ଆଉ କୋଉଠି । ପଚିଶ ଛବିଶ ବର୍ଷ ହେଲା, ଜେଲ୍‌ତ ହୋଇଚି ତାଙ୍କର ଆଉ ଗୋଟିଏ ଘର ।

ଆଜାଦ୍ ଏମିତି ଯାଆନ୍ତି - ଆଉ ଫେରି ଆସନ୍ତି । କେବେ ଯୁଲେଖାଙ୍କ ମନ ଏମିତି ବିକଳ ହୋଇ ନଥିଲା । ଆଜାଦ୍ ବମ୍ବେ ଯିବା ପାଇଁ ବାହାରିଲେ । ଯୁଲେଖା ତାଙ୍କ ପଛେ ପଛେ ଦୁଆର ଯାଏ ଆସିଲେ । 'ଦିହ ପା'କୁ ନଜର ଦେବ' କହିସାରି 'ଖୁଦା ହାଫିଜ୍' କହିଲା ବେଳକୁ ତାଙ୍କ ଆଖି ପାଣିରେ ଭରିଗଲାଣି ।

ଆଜାଦ୍ ଚକିତ ହେଲେ । କେବେତ ଏମିତି ହୁଏ ନାହିଁ । ତାଙ୍କର ଯିବା ତ ନୂଆ ନୁହେଁ । ଯୁଲେଖା ଏମିତି ବ୍ୟସ୍ତ ହେଉଛନ୍ତି କାହିଁକି ?

ସେ ଯୁଲେଖାଙ୍କ ଆଡ଼କୁ ଅନାଇଲେ । ତାଙ୍କ ମନ ବି ଭାରି ହୋଇଗଲା ।

ତଥାପି ଯିବାକୁ ତ ହେବ ।

ଠିକ୍ ସମୟରେ ସଭା ଆରମ୍ଭ ହେଲା । ଗାନ୍ଧିଜୀ କହିଲେ, ଆମର ଯାହା କରିବାର କଥା ଆମେ କରି ସାରିଚେ । ଆଉ ଏ ସରକାର

ଯାଙ୍କେ ଆପୋଷ ବୁଝାମଣା ହେବାର ବାଟ ନାହିଁ । ତେଣୁ ମୋର ଶେଷ କଥା - ''ଇଂରେଜ ଭାରତ ଛାଡ଼'' ।

ଏଇ ହେଲା ସେଇ ସଭାର ନିଷ୍ପତ୍ତି । ସରକାରଙ୍କୁ ଜଣାଇ ଦିଆଗଲା ଯେ, ଇଂରେଜମାନେ ଭାରତ ଛାଡ଼ି ଚାଲି ନ ଗଲେ ଲଢ଼େଇ ଆରମ୍ଭ ହେବ । ହାତ ହତିଆରର ଲଢ଼େଇ ନୁହେଁ । ଅହିଂସା ଲଢ଼େଇ । ସିପାହୀ ହେବେ ଭାରତର ତେତ୍ରିଶ କୋଟି ଲୋକ । ସେନାପତି ହେବେ ନିଜେ ଗାନ୍ଧି ।

ସଞ୍ଜବୁଡ଼ି ଆସୁଥାଏ । ସଭାପତି ଭାବରେ ଆଜାଦ୍ ଏଥିରେ ରାଜି ହୋଇ ସାରି ଥାଆନ୍ତି । ଆଗରେ କଳା-ଅନ୍ଧାର ରାତି । ଭାରତ ଭାଗ୍ୟରେ କ'ଣ ଅଛି କିଏ ଜାଣେ ?

ଗୋଟାଏ କଥା ଭାବି ଆଜାଦ୍ ଖୁସି ଥାଆନ୍ତି । ତିନୋଟି ଯୁଗ ବିତିଗଲାଣି । ଏ ଭିତରେ ଖାଲି ସରକାର ସାଙ୍ଗରେ କଥାବାର୍ତ୍ତା ଚାଲିଛି । ସରକାର କେତେବେଳେ ନେତାମାନଙ୍କୁ ଟିକିଏ ଆଙ୍ଗୁଠି ଦେଖେଇ ଦେଇଛନ୍ତି ତ, ଆଉ କେତେବେଳେ ଗୋଇଠା ମାରି ଦୂରକୁ ଫୋପାଡ଼ି ଦେଇଛନ୍ତି । କାମର କଥା କିଛି ହୋଇ ନାହିଁ । ଏତେ ଦିନକେ ଯାହା ହେଉ, ଗୋଟାଏ କଥା ଘଟିବାକୁ ଯାଉଛି । ଏପଟ ହେଉ କି ସେପଟ ହେଉ । ମରିବା ଠୁଁ ଘୋଷରାଟା ବେଶି ବାଧେ । ବାଧୁଚି ବି ।

ସରକାର ରାଜି ହେଲେ ତ ଭଲ । ନହେଲେ ସେମାନଙ୍କ ପାଇଁ ରାସ୍ତା ଖୋଲା ପଡ଼ିଚି । ଏମିତି ବହୁ କଥା ଆଜାଦ୍‌ଙ୍କ ମନକୁ ଆସୁଥାଏ । ସଭାର ବାକି କାମ ସେ ସାରୁଥାଆନ୍ତି ।

ଘର ଛାଡ଼ିବା ଦିନୁ' ସେ ଭଲ କରି ଶୋଇ ପାରି ନାହାନ୍ତି ।

ଆଗରେ ତାଙ୍କ ପାଇଁ କ'ଣ ଅଛି ସେ କଥା ସେ ଠିକଣା କରି ନ ଜାଣିଲେ ବି, ସରକାର ଯେ ଚୁପ୍ ହୋଇ ବସିବେ ନାହିଁ, ଏତିକିତ ଜଳଜଳ ଦିଶୁଚି । ତା'ପରେ ତ ଜେଲ୍ ଭୋଗ । ଆଜି ରାତିଟା ହେଲେ ଟିକିଏ ନିଶ୍ଚିନ୍ତ ହୋଇ ଶୋଇ ପଡ଼ିବା ।

ଏଇ କଥା ଭାବୁ ଭାବୁ ଆଜାଦ୍ ବୁଲାଭାଇ ଦେଶାଇଙ୍କ ଘର ଆଡ଼କୁ ଚାଲିଲେ । ସେଇଠି ସେ ରହୁଥାଆନ୍ତି । ମୁଠାଏ ଖାଇ ଦେଇ ବିଛଣାରେ ଟିକିଏ ଗଡ଼ପଡ଼ ହୋଇଛନ୍ତି କି ନାହିଁ, ଖବର ମିଳିଲା, ପୋଲିସ୍ ଆସିଛନ୍ତି ।

ମୋଟେ ଆସିବେ ନାହିଁ, ଏ କଥା ଆଜାଦ୍ ଭାବି ନଥିଲେ । ତେବେ ଏତେ କମ୍ ସମୟ ଭିତରେ ଯେ ପରୁଓ୍ୱାନା ଧରି ହାଜର ହୋଇଯିବେ, ଏକଥା ତାଙ୍କୁ ଜଣା ନଥିଲା ।

ସେ ପୋଲିସ୍ ସାଙ୍ଗରେ ଯିବାକୁ ତିଆରି ହୋଇଗଲେ ।

## ତମେ କି ଆମକୁ ପାରିବ

ସେଇ ରାତିରେ ଗାନ୍ଧି, ନେହେରୁ , କୃପାଳିନୀ, ଆସଫ ଅଲ୍ଲୀ, ସରୋଜିନୀ ନାଇଡୁ ଏମିତି ସବୁ ବଡ଼ ବଡ଼ ନେତାମାନେ ଗିରଫ୍ ହୋଇଯାଇଥିଲେ । ରେଳରେ ବସାଇ ଏମାନଙ୍କୁ ବମ୍ବେରୁ ବାହାରକୁ ନିଆଗଲା ।

ଆଜାଦ୍ ବନ୍ଦୀ ହୋଇ ରହିଲେ, ଅହମ୍ମଦନଗର ଦୁର୍ଗରେ ।

ନେତାମାନେ ସବୁ ଜେଲ୍‌ରେ । ଲୋକମାନଙ୍କୁ ବାଟ ଦେଖାଇବାକୁ କେହି ନାହାନ୍ତି । ଗାନ୍ଧି ସିନା ଅହିଂସା କଥା କହିଥିଲେ ।

ତେବେ ଲୋକମାନଙ୍କର ମନର ଅବସ୍ଥା ଯାହା ସେଥିରେ ତାଙ୍କ କଥା ମାନି ଚଳିବା ଭାରି କଷ୍ଟ ।

ପୋଡ଼ାଜଳା, ରେଳ ଲାଇନ୍ ଉପୁଡ଼ା, ଫୋନ୍ ତାର କଟା, ଏମିତି ସବୁ କାମ ଆରମ୍ଭ ହୋଇଗଲା । ସରକାର ବି ଚୁପ୍ ହୋଇ ରହିଲେ ନାହିଁ । ଗୁଳି ଚାଲିଲା । ଷାଠିଏ ଯାଏ ଲୋକ ମଲେ । ଷାଠିଏ ସତୁରୀ ହଜାର ଲୋକ ଧରା ହୋଇ ଜେଲ୍‌ରେ ରହିଲେ । ତଥାପି ଆନ୍ଦୋଳନ ଦବିଲା ନାହିଁ ।

ଆଜାଦ୍ ଜେଲ୍‌ରେ ସମୟ କଟାଇବାକୁ ପଢ଼ାପଢ଼ି ଲେଖାଲେଖି ଆରମ୍ଭ କଲେ । କଡ଼ା ପହରା ଭିତରେ ତାଙ୍କୁ ରଖା ହୋଇଥାଏ । କାଳେ ସେ ପଳାଇବେ ! ତାଙ୍କ ପାଖରେ ଗୋଟିଏ ଛୋଟ ରେଡ଼ିଓ ଥିଲା । ମନ ହେଲେ ଟିକିଏ ଖବର ଶୁଣନ୍ତି । ସେତକ ବି ସିପାହୀମାନଙ୍କର ଚିଲ ଆଖିରୁ ବାଦ୍ ପଡ଼ିଲା ନାହିଁ । ଦିନେ ଜଣେ ସିପାହୀ ସେଇଟିକୁ ନେଇଗଲା ।

ସେତେବେଳର ଜେଲ୍ ଜୀବନ ଅତି ହୀନ ଜୀବନ । ଲୁହା ଥାଳିରେ ଖାଇବାକୁ ହେବ । ଖାଇବାରେ ପୁଣି ଯାହା ଦିଆଯାଉଥିଲା, ତାହା ତଣ୍ଟି ଆରପଟକୁ ମୋଟେ ଯାଏ ନାହିଁ । ଗାଧୁଆ, ପାଇଖାନା ଯିବା ଏସବୁରେ ତ ଆହୁରି ଅସୁବିଧା । ବନ୍ଦୀ ଘରକୁ ଚିଠିପତ୍ର ଲେଖିପାରିବ ନାହିଁ । ଖବର କାଗଜ ଖଣ୍ଡିଏ ବି ପଢ଼ି ପାରିବ ନାହିଁ । ବାହାର ଦୁନିଆରେ କ'ଣ ଘଟୁଛି, ସେ ବିଷୟରେ କିଛି ଜାଣିବ ନାହିଁ ।

ଆଜାଦ୍ ତ ନୂଆ ହୋଇ ଜେଲ୍‌କୁ ଆସୁନାହାନ୍ତି ! ଏ ସବୁ

ସାଙ୍ଗରେ ତାଙ୍କର ଅଳ୍ପ ବେଶି ଚିହ୍ନା ଜଣାଥିଲା । ପୁଣି ଏଇଟା ହେଉଛି ଗୋଟାଏ କାମ ଚଳା ଜେଲ୍ । ଗାନ୍ଧି ଗୋଳରେ ମାତିଥିବା ଲୋକଙ୍କ ପାଇଁ ତିଆରି ହୋଇଛି । ସେଠି ଅବା ସବୁ ସୁବିଧା ଖୋଜିଲେ ମିଳିବ କୁଆଡୁ ?

ନିଜ ମନକୁ ବୁଝାଇ ଆଜାଦ୍ ସେଠି ରହିଲେ । ଧୀରେ ଧୀରେ ଏ ଜୀବନ ବି ତାଙ୍କୁ ଆରେଇଗଲା । ଥରେ ଆଜାଦ୍‌ଙ୍କର ଦେହ ଖରାପ ହେଲା । ତେବେ ସେ ଜେଲ୍ ଡାକ୍ତରଙ୍କ ଔଷଧ ଖାଇବାକୁ ରାଜି ହେଲେ ନାହିଁ ।

ଜେଲ୍‌ରେ ଥିବାବେଳେ ଆଜାଦ୍ ଅନ୍ୟ ବନ୍ଦୀମାନଙ୍କ ସାଙ୍ଗରେ ବେଶ୍ ଥଟ୍ଟା ତାମସା କରୁଥିଲେ । ଏମିତିକି ଜେଲ୍‌ରଙ୍କୁ ବି ଛାଡୁ ନଥିଲେ ।

ଏଇ ଦୁର୍ଗରେ ଆଗରୁ ଚାନ୍ଦ ବିବି ବୋଲି ଜଣେ ଦେଶସେବୀଙ୍କୁ ଆକବର୍ ବନ୍ଦୀ କରି ରଖିଥିଲେ । ତାଙ୍କୁ ଯିଏ ଜଗିଥିଲେ, ତାଙ୍କ ନାମ ଥିଲା ଚିତା ଖାଁ । ଏବେ ଆଜାଦ୍ ହେରିକାଙ୍କୁ ଯିଏ ଜଗୁଥିଲେ, ତାଙ୍କୁ ବି ଆଜାଦ୍ 'ଚିତା ଖାଁ' ବୋଲି ଡାକୁଥିଲେ । ତାଙ୍କ ଦେଖାଦେଖି ଆଉ ଆଉ ବନ୍ଦୀମାନେ ବି ତାଙ୍କୁ ସେଇ ନାଆଁରେ ଡାକିଲେ । ଜେଲ୍‌ର ଏକଥା ଶୁଣି ରାଗରେ ନିଆଁବାଣ ହୋଇଗଲେ ।

ଚିଠିପତ୍ର ଲେଖିବାକୁ ସୁବିଧା ନ ପାଇବାରୁ ଆଜାଦ୍‌ଙ୍କୁ ଭାରି ଖରାପ ଲାଗିଲା । ଯୁଲେଖାଙ୍କ ଲୁହ ଛଳ ଛଳ ଆଖି ସବୁବେଳେ ତାଙ୍କ ଆଖି ଆଗରେ ନାଚିଲା । ସବୁ ଛାଡ଼ି ସେ ଦେଶ କାମରେ ଲାଗିଛନ୍ତି । ଯୁଲେଖା ତାଙ୍କୁ କେବେ ବି କିଛି କହିନାହାନ୍ତି । ସେ ନଥିବା ବେଳେ ଯେତେ ପାରିଛନ୍ତି, ତାଙ୍କ କାମ ଆଗେଇ ନେଇଛନ୍ତି । ସେ ଏବେ ଏଠି

ଅଟକ ହୋଇ ରହିଛନ୍ତି । ଯୁଲେଖା ଏତିକି ଖବର ବି ପାଉ ନାହାନ୍ତି । ସେ ବହୁତ ବ୍ୟସ୍ତ ହେଉଥିବେ । ଯେମିତି ହେଲେ ତାଙ୍କ ପାଖକୁ ଖବର ପଠାଇବାକୁ ହେବ ।

ବହୁତ ଭାବି ଭାବି ସେ ଗୋଟିଏ ଉପାୟ ବାହାର କଲେ । ଚିଠି ଲେଖିବା ପାଇଁ ସୁଯୋଗ ଦେବାକୁ ବଡ଼ଲାଟଙ୍କ ପାଖକୁ ଲେଖିଲେ । ବଡ଼ଲାଟ ଶେଷରେ ବନ୍ଦୀମାନଙ୍କୁ ଚିଠି ଲେଖିବାକୁ ଅନୁମତି ଦେଲେ । ଖାଲି ସେତିକି ନୁହେଁ । ସେମାନଙ୍କୁ ଖବର କାଗଜ ବି ଯୋଗାଇ ଦିଆଗଲା । ବାହାର କଥା ସବୁ ଜାଣି ହେଲା । ଦେଶରେ ଯାହା ସବୁ ଘଟି ଯାଉଛି, ସେ ସବୁ ଆଉ ଅଜଣା ରହିଲା ନାହିଁ ।

ଦେଶସାରା ପୋଡ଼ାଜଳା କାମ ଚାଲିଥାଏ । ଥାନାପୋଷ୍ଟ ଅଫିସ ପୋଡ଼ି ଦିଆଯାଉଥାଏ । ସରକାରୀ କଳ ଅଚଳ ହୋଇ ପଡ଼ିଥାଏ । ଗାନ୍ଧିଜୀ ପୁନାରେ ବନ୍ଦୀ ହୋଇଥାଆନ୍ତି । ସେ ଯେଉଁ ଅହିଂସା କଥା କହିଥିଲେ, ଲୋକେ ତାକୁ ମାନୁ ନାହାନ୍ତି । ଏକଥା ଜାଣି ତାଙ୍କର ମନ ଭାରି ଦୁଃଖ ହେଲା । ସେ ସେଇଠି ଏକୋଇଶ ଦିନିଆଁ ଅନଶନ ଆରମ୍ଭ କରିଦେଲେ ।

ଦେଶରେ ଚାରିଆଡ଼େ ହଇଚଇ ଆରମ୍ଭ ହୋଇଗଲା । ଅହମ୍ମଦ ନଗରରେ ଏକଥା ଶୁଣି ଆଜାଦ୍ ବି ବହୁତ ଦୁଃଖ କଲେ । ତେବେ ସେ ବା କ'ଣ କରିପାରନ୍ତେ ? ଜେଲ୍‌ରେ ଗାନ୍ଧିଜୀଙ୍କ ଦେହ ବହୁତ ଖରାପ ହେଲା । ଶେଷରେ, ସରକାର ଡରିଯାଇ ଗାନ୍ଧିଜୀଙ୍କୁ ୧୯୪୪ ମସିହା ମଇ ମାସରେ ଖଲାସ କରିଦେଲେ ।

ସେପଟେ କଲିକତାରେ ଯୁଲେଖାଙ୍କର ଦେହ ହଠାତ୍ ଖରାପ

ହେଲା । ବହୁଦିନ ଧରିଁ ସେ ନିଜ ଉପରେ ଅତ୍ୟାଚାର କରି ଚାଲିଥିଲେ । ଖିଆପିଆରେ ଠିକଣା ରଖୁ ନଥିଲେ । ଦେହ ଭାଙ୍ଗି ପଡ଼ିଥିଲା । ତଥାପି ସେ ଆଜାଦ୍‌ଙ୍କୁ ଏକଥା ଜଣାଉ ନଥିଲେ । ଚିଠିପତ୍ର ଦିଆନିଆ ତ ଚାଲିଥିଲା । ସେ ଭଲ ଅଛନ୍ତି ବୋଲି ସବୁବେଳେ ଲେଖୁଥିଲେ । ହଠାତ୍ ମାର୍ଚ୍ଚ ମାସରେ ସେ ଯୁଲେଖାଙ୍କର ଦେହ ଖରାପ କଥା ଶୁଣିଲେ । ରେଡ଼ିଓରେ ବି ସେ ଅସୁସ୍ଥ ଅଛନ୍ତି ବୋଲି କୁହାଗଲା ।

କେହି କେହି ଏତିକିବେଳେ ଆଜାଦ୍‌ଙ୍କୁ କହିଲେ ଯେ, ସେ ଏକଥା ସରକାରଙ୍କୁ ଜଣାଇ ଦିଅନ୍ତୁ । ଅସୁସ୍ଥା ସ୍ତ୍ରୀ ପାଖରେ ରହିବା ପାଇଁ ସରକାର ତାଙ୍କୁ ଛାଡ଼ି ଦେଇପାରନ୍ତି । ତେବେ ଆଜାଦ୍ ଏ ସବୁଥିରେ କାନ ଦେଲେ ନାହିଁ । ସରକାରଙ୍କୁ ମୁଣ୍ଡ ନୁଆଇଁ କିଛି ମାଗିବା କଥା ସେ ଭାବି ପାରି ନଥିଲେ ।

ମନ ଅସ୍ଥିର ହେଉ ଥାଏ । ଯୁଲେଖାଙ୍କ କଥା ଥରକୁ ଥର ମନେ ପଡୁଥାଏ । ଏତେ ଦିନ ହେଲା ସେ ତାଙ୍କ ପାଖେ ପାଖେ ଅଛନ୍ତି । ତାଙ୍କର ସାହାଯ୍ୟ ପାଇ ନଥିଲେ, ସେ ଯାହା ଯେତିକି କରି ପାରିଛନ୍ତି, ତାହା କରି ପାରିନଥାନ୍ତେ । ଆଜି ସେଠି ସେ ନିରାଶ ହୋଇ ରୋଗବିଛଣାରେ ଶୋଇଛନ୍ତି । ଆଜାଦ୍ ଏଠି ବନ୍ଦୀ । ପାଖକୁ ଯିବାର ବାଟ ନାହିଁ । ତାଙ୍କୁ ଭାରି ବ୍ୟସ୍ତ ଲାଗୁଥାଏ । କ'ଣ ବା କରିବେ ? ମନକଥା କାହାକୁ କହିବେ ?

ଜେଲ୍‌ରେ ତାଙ୍କ ଜୀବନ ଯେମିତି କଟିବାର କଥା କଟୁଥିଲା । କାମକୁ ସେ ସମୟ ଭିତରେ ବାନ୍ଧି ଦେଇଥିଲେ । ଭୋର୍ ଚାରିଟାରୁ ବିଛଣା ଛାଡୁଥିଲେ । ସେତିକିବେଳେ ଚା' ମିଳୁଥିଲା । ନିତ୍ୟକର୍ମ ସାରିବା

ପରେ ଜଳଖିଆ ଖାଉଥିଲେ । ତା'ପରେ ଖବର କାଗଜ ପଢୁଥିଲେ । ଚିଠିପତ୍ର ଲେଖୁଥିଲେ । ମନ ତାଙ୍କର ପଡ଼ି ରହିଥିଲା କଲିକତାରେ । ଏପ୍ରିଲ ନଅ ତାରିଖରେ ଯୁଲେଖା ସଂସାର ଛାଡ଼ି ଚାଲିଗଲେ । ଆଜାଦ୍ ଏ ଖବର ପାଇ ଦୁଃଖରେ ଭାଙ୍ଗି ପଡ଼ିଲେ । ବନ୍ଦୀମାନେ ଯାହା ଯେମିତି ସାନ୍ତ୍ୱନା ଦେବା କଥା ଦେଲେ । ହେଲେ ଏ ଯୋଉ ଦୁଃଖ, କାହାର କଥାରେ କ'ଣ ତାହା ଚାଲିଯିବ ! ଆଜାଦ୍ ଚୁପ୍‌ଚାପ୍ ନିଜ କୋଠରୀରେ ବସିଥାଆନ୍ତି । ବେଳେ ବେଳେ ଯୁଲେଖାଙ୍କୁ ମନେପକାଇ କ'ଣ ସବୁ ଲେଖୁଥାନ୍ତି । ଯୁଲେଖାଙ୍କୁ ସେ ଜୀବନଠାରୁ ବଳି ଭଲ ପାଉଥିଲେ । ଆଜି ସେ ତାଙ୍କୁ ଛାଡ଼ି ନିଜ ବାଟରେ ଚାଲିଗଲେ । ଏଇ କଥା ମନେ ପଡ଼ିଲେ, ତାଙ୍କ ଛାତିଭିତରଟା ଘାଣ୍ଟି ହୋଇ ଯାଉ ଥାଏ ।

ଦୁଃଖ ଏତିକିରେ ସରିଲା ନାହିଁ । ସେଇଠି ଅଟକ ଥିବା ବେଳେ ତାଙ୍କର ଭଉଣୀ ସଂସାର ଛାଡ଼ି ଚାଲିଗଲେ । ଏ ଖବର ପାଇ ଆଜାଦ୍ ଆହୁରି ଭାଙ୍ଗିପଡ଼ିଲେ ।

ସମୟ କାହାକୁ ଅପେକ୍ଷା କରେ ନାହିଁ । କିଛି ଦିନ ବିତି ଗଲା । ଆଜାଦ୍ ଧୀରେ ଧୀରେ ଦୁଃଖକୁ ଭୁଲିବାକୁ ଚେଷ୍ଟା କଲେ । ନିତି ଦିନିଆ କାମ କରିବାକୁ ଆରମ୍ଭ କଲେ । ତେବେ ଆଗଭଳି ଆଉ ଉତ୍ସାହ ନ ଥାଏ । ଜୀବନ ଚାଲିଥାଏ ।

ସେତିକିବେଳେ ଆଜାଦ୍ ଶୁଣିଲେ, ଗାନ୍ଧିଜୀ ଜିନ୍ନାଙ୍କ ସାଙ୍ଗରେ କଥାବାର୍ତ୍ତା ଚଳାଇବା ପାଇଁ ମନ କରିଛନ୍ତି । ତାଙ୍କୁ ଏ କଥା ଭଲ ଲାଗିଲା ନାହିଁ । ତେବେ ସେ ଚୁପ୍ ରହିଲେ । ଏହା ଭିତରେ ତାଙ୍କର ବଦଳି ହୋଇଗଲା ବାଙ୍କୁଡ଼ା ଜେଲ୍‌କୁ । ୧୯୪୫ ମସିହାରେ ବଡ଼ଲାଟ ଦେଶ

ବିଷୟରେ କଥା ବାର୍ତ୍ତା କରିବାକୁ ନେତାମାନଙ୍କୁ ଡକାଇଲେ । ତେଣୁ ବଡ଼ବଡ଼ ନେତାମାନେ ଜେଲ୍‌ରୁ ଛାଡ଼ ପାଇଲେ ।

ଆଜାଦ୍ ବି ଏତିକିବେଳେ ଜେଲ୍‌ରୁ ବାହାରିଲେ । ଆଉ ସାଙ୍ଗେ ସାଙ୍ଗେ କଲିକତା ଚାଲିଗଲେ ।

**ଗଲା ପୁତ୍ର ବାହୁଡ଼ି ନଇଲା**

କଲିକତା ଷ୍ଟେସନରେ ସେଦିନ ହଜାର ହଜାରଲୋକ । ବୀର ସିପାହୀ ଘରକୁ ଫେରୁଛି । ତାଙ୍କୁ ତ ପୁଣି ପାଛୋଟି ନେବାକୁ ହେବ । ଫୁଲ, ବାଜା, ପତାକା କେଉଁଥିରେ ଊଣା ନ ଥାଏ । ଲୋକେ ପାଗଳ ପରି ଆଜାଦ୍‌ଙ୍କ ପାଦ ଛୁଇଁବାକୁ ମାଡ଼ି ଆସୁଥାଆନ୍ତି । ଏତେ ଲୋକ ଭିତରେ ଆଜାଦ୍‌ଙ୍କ ଖୋଜିଲା ଖୋଜିଲା ଆଖି ଖୋଜୁଥାଏ ଯୁଲେଖାଙ୍କ ଶାନ୍ତ, ସରଳ ମୁହଁକୁ । ତିନିବର୍ଷ ତଳେ ସେ ତାଙ୍କୁ ବିଦା କରିଥିଲେ । ସେ ଆଉ କେବେ ଆସିବେ ନାହିଁ ।

ଆଜାଦ୍ ଲୋକଙ୍କ ଆଡ଼କୁ ଚାହିଁଲେ । ବାଜା ବନ୍ଦ କରିବାକୁ କହିଲେ । ତାଙ୍କ ଆଖି ଆଗରେ ପଛ କଥା ସବୁ ଭାସି ଉଠୁଥାଏ । ଯୁଲେଖା ଆଜି ଏଠି ଥାଆନ୍ତେ । ସେ ଏମିତି ହତଭାଗା ଯେ, ତାଙ୍କ ଶେଷ ବେଳରେ ଟିକିଏ ପାଖରେ ବସି ପାରିଲେ ନାହିଁ । ତାଙ୍କ ମନ ଭାରି ହୋଇ ଆସୁଥାଏ । ଲୋକେ ବି ତାଙ୍କ ମନ କଥା ବୁଝିପାରି ଚୁପ୍ ହୋଇ ଯାଇଥାନ୍ତି ।

ଦେହ ଭାଙ୍ଗି ଯାଇଥିଲା ଜେଲରେ ଥିବା ବେଳେ । ଓଜନ ବହୁତ କମି ଯାଇଥାଏ । ଏତିକିବେଳେ ବଡ଼ଲାଟଙ୍କ ସାଙ୍ଗେ କଥାବାର୍ତ୍ତା ପାଇଁ

ସିମଳା ଯିବାକୁ ପଡ଼ିଲା । ବନ୍ଧୁମାନେ ମନା କରୁଥିଲେ । ତେବେ ଦେଶପାଇଁ ସେ ଆଉ ନିଜ ଦେହ କଥା ଭାବିଲେ ନାହିଁ । ସିମଳା ଗଲେ । ବଡ଼ଲାଟଙ୍କ ସାଙ୍ଗରେ କଥାବାର୍ତ୍ତା କଲେ । ଅନ୍ୟ ନେତାମାନଙ୍କୁ ଲାଟଙ୍କ କଥା ବୁଝାଇଲେ । ଗାନ୍ଧିଜୀ ବି ବଡ଼ଲାଟଙ୍କ କଥା ମାନି ନେବାକୁ ରାଜି ହୋଇଗଲେ । ଜିନ୍ନା ପୁଣି ସେଇ ପୁରୁଣାଦାବି ଉଠାଇଲେ । ପାକିସ୍ତାନ ତାଙ୍କର ଦରକାର ।

ସେ ପଟେ ବିଦେଶରେ ଅବସ୍ଥା ବଦଳି ଯାଉଥାଏ । ଦ୍ୱିତୀୟ ମହାଯୁଦ୍ଧ ଶେଷ ହୋଇଥାଏ । ଜାପାନର ଦୁଇଟି ସହର ଉପରେ ଆମେରିକା ବୋମାପକାଇ ତାକୁ ଧ୍ୱଂସ କରିଦେବାରୁ ଜାପାନ ଶରଣ ପଶିଥାଏ । ବିଲାତରେ ବି ସରକାର ବଦଳି ଯାଇଥାଏ । ନୂଆ ସରକାର ଭାରତକୁ ସ୍ୱାଧୀନତା ଦେବା ପାଇଁ ରାଜି ହୋଇଯାଇଥାଏ ।

କ'ଣ କେମିତି କରାଯିବ, ଏଇ କଥା ଠିକଣା କରିବାକୁ ବିଲାତ ସରକାର ତିନିଜଣଙ୍କୁ ଭାରତ ପଠାଇଲେ । ସେମାନେ ଆସିବା ଆଗରୁ ଅଜାଡ଼୍ ଭାରତର ଏ ଯୋଉ ଛାଟିଆଣ ସମସ୍ୟା, ତା'ପାଇଁ ଗୋଟିଏ ବାଟ ବାହାର କରି ନେତାମାନଙ୍କ ଆଗରେ ଥୋଇଲେ । ସେ ବୁଝାଇଲେ, ଆମେ ଦେଶକୁ ବାଣ୍ଟିବା ନାହିଁ । ବଦଳରେ ମୁସଲମାନମାନଙ୍କୁ ଟିକିଏ ଅଧିକା ସୁବିଧା ଦେବା । ଗାନ୍ଧିଜୀ ଏଥିରେ ରାଜି ହେଲେ । ଆପତ୍ତି କଲେ ଜିନ୍ନା । ସେ କିଛି କଥା ଶୁଣିବାକୁ ରାଜି ନଥିଲେ । ତାଙ୍କର ଦାବି ପାକିସ୍ତାନ ।

ଦେଶ ପଛେ ରସାତଳକୁ ଯାଉ, ସେ ନିଜର ଅଲଗା ଦେଶଟିଏ ଚାହାନ୍ତି । ନହେଲେ ପୁଣି ବଡ଼ଲାଟ ହେବେ କେମିତି ? ନୂଆ ଦେଶ ଗଢ଼ିଛନ୍ତି ବୋଲି ଇତିହାସରେ କେମିତି ଜାଗା ପାଇବେ ?

ବିଲାତର ପ୍ରତିନିଧିମାନେ ଅଲଗା ମୁସଲମାନ ଦେଶ ଗଢ଼ିବା କଥାରେ ରାଜି ହେଲେ ନାହିଁ । ଏମାନେ ଯାହା କହିଲେ ଜିନ୍ନା ତାକୁ ମୋଟେ ମାନିଲେ ନାହିଁ । ଲାଟଙ୍କ କଥା ଅନୁସାରେ କଂଗ୍ରେସ ସ୍ୱାଧୀନତା ଆଗରୁ ଗୋଟିଏ କାମଚଳା ସରକାର ଗଢ଼ିବାକୁ ରାଜି ହେଲା । ମୁସ୍‌ଲିମ୍-ଲିଗ୍ ଏଥିରେ ରହିବ ନାହିଁ ବୋଲି ଠିକଣା କଲା । ଜିନ୍ନାଙ୍କ କଥାରେ ହଠାତ୍ ହାଣ କାଟ ଆରମ୍ଭ ହୋଇଗଲା । ନୂଆ ସରକାର ଗଢ଼ାହେଲା । ନେହେରୁ ହେଲେ ପ୍ରଧାନମନ୍ତ୍ରୀ । ଦେଶ ସେତେବେଳେ ରକ୍ତରେ ଗାଧୋଉଥାଏ । ଲୋକଙ୍କ ଚାପରେ ମୁସ୍‌ଲିମ୍‌ଲିଗ୍ ସରକାରରେ ରହିଲେ । ତେବେ ଅସୁବିଧା ଆରମ୍ଭ ହୋଇଗଲା । ଜିନ୍ନା ଯାହା ଚାହୁଁଥିଲେ, ଯେମିତି ହେଲେ ତାହା ହାସଲ କରିବାକୁ ମନରେ ଆଣ୍ଠ ବାନ୍ଧିଥିଲେ ।

ଆଜାଦ୍ ଏ ସରକାରରେ ରହିବାକୁ ଚାହୁଁ ନ ଥିଲେ । ତେବେ ବଡ଼ଲାଟଙ୍କ କଥାରେ ତାଙ୍କୁ ମତ ବଦଳାଇବାକୁ ପଡ଼ିଲା । ନେହେରୁ ସରକାରରେ ସେ ହେଲେ ଶିକ୍ଷାମନ୍ତ୍ରୀ । ସେଇ ପଦରେ ୧୯୫୮ ମସିହା ଫେବୃୟାରୀ ମାସ ପର୍ଯ୍ୟନ୍ତ ରହିଥିଲେ । ଆଜାଦ୍ ଜୀବନରେ ପାଠଶାଳାର ଦ୍ୱାର ମାଡ଼ି ନଥିଲେ । ତେବେ ଘରେ ପଢ଼ି ସେ ଇଂରାଜୀ ଭାଷା ଭଲ ଭାବେ ଜାଣିଥିଲେ । ସରକାରୀ କାମ, ସଭାସମିତିରେ ସେ କିନ୍ତୁ କେବେ ଏଇ ଭାଷା କହୁ ନଥିଲେ ।

## ଭାରତ ସ୍ୱାଧୀନ ହେଲା

୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖରେ ଇଂରେଜମାନେ ଭାରତ ହାତରେ ଶାସନ ଭାର ଦେଇ ନିଜ ଦେଶକୁ ଫେରିଗଲେ ।

ଭାରତଦୁଇଭାଗ ହୋଇ ଗୋଟିଏ ନୂଆ ଦେଶର ଜନ୍ମ ହେଲା । ତା'ର ନାମ ପାକିସ୍ତାନ । ଇଂରଜମାନେ ମୂଳରୁ ଏହା ଚାହୁଁଥିଲେ । ଏଇଥିପାଇଁ ଜିନ୍ନାଙ୍କୁ ହାତବାରିସୀ କରିରଖିଥିଲେ । ଗାନ୍ଧି ଏଥିରେ ରାଜି ନଥିଲେ । ଆଜାଦ୍ ତ ମୂଳରୁ ଏହାର ବିରୋଧ କରୁଥିଲେ । ଅଯଥା ହାଣକାଟରୁ ଦେଶକୁ ବଂଚାଇବା ପାଇଁ ପଟେଲ ଏଥିରେ ରାଜି ହେଲେ । ନେହେରୁ ତ ଆଗରୁ ବଡ଼ଲାଟଙ୍କ କଥାରେ ରାଜିହୋଇ ସାରିଥିଲେ । ଗାନ୍ଧି ବି ଶେଷରେ ମତ ଦେଲେ । ଶେଷଯାଏ କିନ୍ତୁ ଆଜାଦ୍ ନିଜ ମତରେ ସ୍ଥିର ରହିଲେ । ତାଙ୍କର କଥା ଶୁଣାଗଲା ନାହିଁ ।

ଅଗଷ୍ଟ ୧୪ରେ ପାକିସ୍ତାନ ଓ ୧୫ରେ ଭାରତ- ଏମିତି ଦୁଇଟି ନୂଆ ଦେଶ ଜନ୍ମ ହେଲା । ଲାଲକିଲ୍ଲା ଉପରେ ତ୍ରିରଙ୍ଗା ପତାକା ଉଡ଼ିଲା । ଭାରତର ଏତେଦିନର ସପନ ସତ ହେଲା । ଲଢ଼େଇର ଶେଷ ହେଲା ।

ତେବେ ଏଥି ଭିତରେ ନୂଆ ଲଢ଼େଇ ଆରମ୍ଭ ହୋଇ ଯାଇଥିଲା । ଆଗରୁ ଭାରତ ଲଢୁଥିଲା ବିଦେଶୀ ସରକାର ସାଙ୍ଗରେ । ଏବେ ଲଢ଼େଇ ହେଉଥିଲା, ଦୁଇଟି ଜାତି ଭିତରେ, ଯାହା ଭିତରୁ ଗୋଟିଏ ଜାତି ଅଳ୍ପଦିନ ଆଗରୁ ଭାରତର ଥିଲା ।

ଦେଶ ବଣ୍ଟା ଯିବା ପରେ ପାକିସ୍ତାନରୁ ଘରଛଡ଼ା ମଣିଷ ଦଳଦଳ ହୋଇ ଭାରତ ଆସିଲେ । ଏଠୁ ମଧ୍ୟ ସେମିତି କିଛିଗଲେ । ପାକିସ୍ତାନ କାଶ୍ମୀରକୁ ଦଖଲ କରିବାକୁ ଲଢ଼େଇ ଆରମ୍ଭ କରିଦେଲା । ରାଜା ରାଜୁଡ଼ାଙ୍କ ବିଷୟରେ କ'ଣ କରାଯିବ, ଠିକଣା ହୋଇନଥାଏ । ଗୋଟିଏ ମଣିଷକୁ ଖୁସି କରିବାକୁ ଯାଇ, ଏ ଯେଉଁ ହଣାକଟା ହେଲା, ଇତିହାସରେ କେବେ ଏମିତି ଘଟିଥିବାର ଜଣା ନାହିଁ ।

ଆଜାଦ୍ ଦୁଃଖ ପାଇଲେ । ଦୁଇ ଜାତିକୁ ମିଳାଇ ରଖିବା ପାଇଁ ସବୁପ୍ରକାର ଚେଷ୍ଟା କଲେ । ଶେଷରେ ନିରାଶ ହୋଇ ଚୁପ୍ ରହିଲେ । ତେବେ ତାଙ୍କର ଆଶାଥିଲା ଦୁଇଦେଶ ବେଶି ଦିନ ଅଲଗା ରହିପାରିବେ ନାହିଁ । ତାଙ୍କର ସେଇ ଆଶା ଏବେବି ପୂରଣ ହୋଇନାହିଁ ।

ତାଙ୍କ କଥା ରହିଲା ନାହିଁ । ଏଇଥିପାଇଁ ତାଙ୍କର ଭାରି ଅଭିମାନ ହୋଇଥିଲା । ସରକାରରେ ରହିବେ ନାହିଁ ବୋଲି ଠିକଣା କରିଥିଲେ । ତେବେ ଲାଟଙ୍କ ଚାପରେ ସରକାରରେ ରହିଲେ । ତାଙ୍କର ମନ ଏତେ ଖରାପ ହୋଇଯାଇଥିଲା ଯେ, ସେ ଭଲରେ କାମଦାମ ବି ପାରିପାରିଲେ ନାହିଁ । ବଡ଼ କଷ୍ଟରେ ନିଜକୁ ବୁଝାଇଲେ । କାନ୍ଧରେ ଯେତେବେଳେ ଦାୟିତ୍ୱ ନେଇଛନ୍ତି, ତାକୁ ଯେମିତି ହେଲେ ବୋହିବାକୁ ପଡ଼ିବ ।

ଧୀରେ ଧୀରେ ଆଜାଦ ନିଜର ନିତିଦିନିଆ ଜୀବନକୁ ଫେରିଆସିଲେ । ଭଲ ଖାଇବା, ଭଲ ପିନ୍ଧିବା ହେଉଛି ତାଙ୍କର ସବୁକାଳର ଅଭ୍ୟାସ । କୋଉଠି ଭଲ ଦୃଶ୍ୟଟିଏ ଦେଖିଲେ ସେ ତାକୁ ଅନେକ ବେଳଯାଏ ଦେଖୁଥିଲେ । ଗୀତଟିଏ ବୋଲା ହେଲେ କାନଡେରି ଶୁଣୁଥିଲେ । ନିଜେ ତ ଭଲ ସୀତାର ବଜାଉଥିଲେ । ଏବେ ଏଥିପାଇଁ ବେଳ ମିଳୁଥିଲା । ଟଙ୍କା ପଇସା ସାଇତି ରଖିବା କଥା ତାଙ୍କୁ ଜଣାନଥିଲା । ଯାହା ଯୋଉଠୁ ଆସୁଥିଲା, ସେ ସବୁ ସେମିତି ଖର୍ଚ୍ଚ ବି ହୋଇଯାଉଥିଲା ।

ଯୁଲେଖା ଥିବାବେଳେ ଅବା ଏଥିପାଇଁ ଟିକିଏ ପାଟି ତୁଣ୍ଡ କରୁଥିଲେ । ଏବେ ସେତ ନିଜ ହାତରେ ନିଜେ ଚଉଦ ପା । କିଏ ତାଙ୍କୁ କ'ଣ କହିବ ? ସେ ଅବା ତାକୁ ମାନିବେ କାହିଁକି ?

ଭାରତ ସ୍ୱାଧୀନ ହେବାର ପାଞ୍ଚମାସରେ ଗାନ୍ଧିଜୀଙ୍କୁ ଜଣେ ଗୁଳିକରି ମାରିଦେଲା । ରକ୍ତର ଦାଗ ପୂରାପୂରି ଲୁଚି ନଥିଲା, ଗାନ୍ଧିଜୀ ଚାଲିଗଲେ । ଆଜାଦ୍ ଏଥିରେ ଭାଙ୍ଗିପଡ଼ିଲେ । ଗାନ୍ଧିଜୀଙ୍କୁ ସେ ବହୁତ ଭକ୍ତି କରୁଥିଲେ । ତାଙ୍କର ଚାଲିଯିବାପରେ ଆଜାଦ୍ ନିଜକୁ ଭାରି ଏକୁଟିଆ ମନେକଲେ ।

ଧୀରେ ଧୀରେ ଆଜାଦ୍ କାମ ଭିତରେ ନିଜକୁ ବ୍ୟସ୍ତ ରଖିବାକୁ ଚେଷ୍ଟା କଲେ । ଦେଶ ନୂଆ କରି ସ୍ୱାଧୀନ ହୋଇଛି । ଆଗରେ ଅସୁମାରି କାମ ।

ଏତିକିବେଳେ ଦେଶରେ ଭୋଟ ନିଆଯିବା ବେଳ ଆସିଗଲା । ପହିଲିଥର ପାଇଁ ଭୋଟ ହେବ । ଆଜାଦ୍ ଠିଆ ହେଲେ ରାମପୁର ବୋଲି ଗୋଟିଏ ଜାଗାରୁ । ବହୁତ ଭୋଟ ପାଇ ଜିଣିଲେ ବି । ସ୍ୱାଧୀନତା ଆଗରୁ ସେ ଯେମିତି ଶିକ୍ଷା ମନ୍ତ୍ରୀ ଥିଲେ, ଏଥର ବି ସେଇଆ ରହିଲେ । ମଲା ପର୍ଯ୍ୟନ୍ତ ସେଇଆ ଥିଲେ ।

ମନ୍ତ୍ରୀ ହିସାବରେ ସେ ଏ ଦେଶର ଶିକ୍ଷା ବ୍ୟବସ୍ଥାକୁ ନୂଆରୂପ ଦେବା ପାଇଁ ଚେଷ୍ଟା କରିଥିଲେ । ସାରା ଦୁନିଆ ସହିତ ଭାରତକୁ ପାଦମିଳାଇ ଚାଲିବାକୁ ପଡ଼ିବ । ଖାଲି ପୁରୁଣା ରୀତିନୀତିକୁ ଧରି ବସିଲେ ଚଳିବ ନାହିଁ । ପୁଅ-ଝିଅଙ୍କ ପାଇଁ ଦେଶରେ ଯେଉଁ ଅଲଗା ଅଲଗା ଶିକ୍ଷା ବ୍ୟବସ୍ଥା ଥିଲା, ତାକୁ ସେ ଉଠାଇ ଦେଲେ । ଦୁଇପକ୍ଷ ସମାନ ତାଳରେ ପାଦ ମିଳାଇ ଚାଲିଲେ ଦେଶର ମଙ୍ଗଳ ହେବ ।

ଭାରତ ଗୋଟିଏ ପୁରୁଣା ଦେଶ । ତା'ର ନିଜର ଚଳଣିଅଛି, ଶିକ୍ଷାଦୀକ୍ଷା ଅଛି । ସେ ସବୁକୁ ଏକାବେଳକେ ଭୁଲିଗଲେ ଚଳିବ ନାହିଁ ।

ପୁରୁଣା ପଣ୍ଡିତମାନେ ଆସନ୍ତୁ । ଭାରତର ଯାହା ନିଜର ଅଛି, ସେ ସବୁକୁ ଖୋଜି ବାହାର କରନ୍ତୁ । ହିନ୍ଦୀ ହେଉଛି ଏ ଦେଶର ବେଶୀ ଲୋକେ କହୁଥିବା ଭାଷା । ସେଇ ଭାଷାକୁ ସରକାରୀ ଭାଷା କରାଗଲେ ଦେଶପାଇଁ ଭଲ ହେବ ।

ଭାରତରେ ମୋଟେ ଅକ୍ଷର ଚିହ୍ନିନଥିବା ଲୋକଙ୍କର ସଂଖ୍ୟା ବହୁତ ବେଶୀ । ଏ ଭିତରୁ ବେଶୀ ଲୋକଙ୍କର ପାଠ ପଢ଼ିବାର ବୟସ ଚାଲିଗଲାଣି । ସେମାନଙ୍କୁ ସେମିତି ଛାଡ଼ିଦେଲେ ଚଳିବ ନାହିଁ । ଦେଶସାରା ନୂଆନୂଆ ସ୍କୁଲ, କଲେଜ, ଇଞ୍ଜିନିୟରିଂ ଆଉ ଡାକ୍ତରୀ କଲେଜମାନ ବସାଇବାକୁ ହେବ । ସାରା ଦେଶକୁ ଗୋଟିଏ ସୂତାରେ ଗୁନ୍ଥିବାକୁ ପଡ଼ିବ ।

ଶିକ୍ଷକମାନେ ଦେଶର ଆଗୁଆ ପୀଢ଼ିକୁ ଗଢ଼ୁଛନ୍ତି । ସେମାନେ ଯେତେଦିନଯାଏ ତଳେ ପଡ଼ିରହିଛନ୍ତି, ସେତେଦିନଯାଏ ଦେଶ ଆଗେଇ ପାରିବ ନାହିଁ । ସେମାନଙ୍କର ବେତନ ବଢ଼ାଇବାକୁ ପଡ଼ିବ । ତାଙ୍କ ଭିତରେ ଯେଉଁମାନେ ଭଲ କାମ କରୁଛନ୍ତି, ସେମାନଙ୍କୁ ଭଲ ଜାଗାରେ ବସାଇବାକୁ ପଡ଼ିବ ।

ଦେଶରେ ହରିଜନ ଆଦିବାସୀମାନେ ପଛୁଆ ହୋଇ ରହିଛନ୍ତି । କାଳକାଳରୁ ସେମାନଙ୍କ ଉପରେ କାହାରି ଆଖି ପଡ଼ି ନାହିଁ । ସେମାନଙ୍କ ଭିତରେ ପାଠପଢ଼ା କଥାଟାକୁ ଖେଳେଇ ଦେବାକୁ ପଡ଼ିବ । ସେମାନଙ୍କୁ ଏଥିପାଇଁ ସରକାରୀ ସାହାଯ୍ୟ ଯୋଗାଇ ଦେବାକୁ ହେବ ।

ଏମିତି ଅସୁମାରୀ କାମ ଭିତରେ ଆଜାଦ୍ ନିଜକୁ ହଜାଇ ଦେଲେ । କାମ ଭିତରେ ସେ ନିଜର ଦୁଃଖକୁ ଭୁଲିବା ପାଇଁ ଚେଷ୍ଟା

କରୁଥିଲେ । ଆଜାଦ୍ ନିଜ ହାତରେ ନିଜକୁ ଗଢ଼ିଥିଲେ । ବାପା ଖାଲି ତାଙ୍କୁ ପାଠଶାଳାକୁ ପଠାଇବାକୁ ରାଜି ହୋଇ ନଥିଲେ । ଏହାଛଡ଼ା ସେ କ'ଣ ପଢ଼ିବେ କେତେ ପଢ଼ିବେ, କ'ଣ କରିବେ ଏ କଥାରେ କେବେ ମୁଣ୍ଡ ପୂରାଇ ନାହାନ୍ତି । ଆଜାଦ୍ ନିଜ କଥା ନିଜେ ଠିକ୍ କରିଛନ୍ତି । ତାଙ୍କ ଭଳି ଜଣେ ପାଠଶାଳା ଦ୍ୱାର ନମାଡ଼ିଥିବା ଲୋକ ହାତରେ ଆଲ୍ଲା ଏ ଦେଶର ଶିକ୍ଷାର ଭାର ଦେଇଛନ୍ତି । କୋଉଠି ଟିକିଏ ଭୁଲ୍ ରହିଗଲେ ଦେଶ ତାଙ୍କୁ କେବେ ବି ମାଫ୍ କରିବ ନାହିଁ ।

ସେଇଥିପାଇଁ ଆଜାଦ୍ ଭାବିଯାଆନ୍ତି । ନୂଆ କଥାଟିଏ ଦେଖିଲେ ତାକୁ ମନେ ରଖନ୍ତି । ନିଜ ଦେଶରେ ତାକୁ ଚଳାଇବା କଥା ଭାବନ୍ତି । ଏମିତି ଚାଲିଥାଏ ତାଙ୍କର ଜୀବନ ।

## ଦୀପ ଲିଭିଗଲା

ଷୋହଳ ବର୍ଷ ହୋଇଥିଲା । ସେଇଦିନଠୁଁ ଆଜାଦ୍ ନିଜକୁ ଦେଶମାଆ ହାତରେ ଟେକି ଦେଇଛନ୍ତି । ନିଜ କଥା ବେଶି ଭାବି ନାହାନ୍ତି । ମାଆ, ଭାଇ, ବାପା, ଭଉଣୀ, ଏମିତିକି ପୁଅ ଓ ସ୍ତ୍ରୀ ବି ତାଙ୍କୁ ଛାଡ଼ି ଚାଲିଯାଇଛନ୍ତି । ଆଜାଦ୍ ଦୁଃଖ ପାଇଛନ୍ତି । ତେବେ ପୂରା ଭାଙ୍ଗି ପଡ଼ିନାହାନ୍ତି । ଆଖିର ଲୁହକୁ ହାତରେ ପୋଛି ନିଜ ବାଟରେ ଏକା ଆଗେଇ ଯାଇଛନ୍ତି ।

ସ୍ତ୍ରୀ ଯୁଲେଖା ତାଙ୍କୁ ଛାଡ଼ିଗଲେ । ଆଜିକୁ ପନ୍ଦର ବର୍ଷ ତଳେ । ସେତେବେଳେ ତାଙ୍କୁ ସାରା ସଂସାର ଶୂନ୍ୟ ଦେଖାଯାଇଥିଲା । ସେ ଭାବୁଥିଲେ ତାଙ୍କର କ'ଣ ଗୋଟେ ହୋଇଯିବ । କାହିଁ କିଛି ହେଲା

ନାହିଁ ତ । ସେ ଦୁଃଖକୁ ସେ କଟାଇ ପାରିଲେ, ପୁଣି ନିଜର ନିତିଦିନିଆ କାମରେ ଲାଗିଲେ ।

ମଣିଷ ମାତ୍ରକେ ଏମିତି । ପାରିବ ନାହିଁ ପାରିବ ନାହିଁ ବୋଲି ପାଟିକରେ ସିନା, ତେବେ ସବୁପାରେ । ପାରିବାକୁ ପଡ଼େ ।

ଦେହ କିଛି ଦିନ ହେବ ଭଲ ଲାଗୁନାହିଁ । ଭାରି ଦୁର୍ବଳ ଲାଗୁଚି । ଜେଲ୍‌ରେ ଥିବାବେଳେ ଲୁହାର ଦେହ ଭାଙ୍ଗିଥିଲା । ଥରକୁ ଥର ଦୁଃଖର ଝଡ଼ ବହିଆସି ତାକୁ ଖୋଳ କରିଦେଇଛି । ଏବେ ଯେତିକି ଯାହା ସେ ଚାଲୁଛନ୍ତି ଖାଲି ନିଜ ମନର ଜୋରରେ । କୋଉଦିନ ଥକି ପଡ଼ିବେ । ବାଟରେ ମୁହଁମାଡ଼ି ପଡ଼ିଯିବେ ।

ସେଦିନ ବି ଆସିଗଲା । ୧୯୫୮ ମସିହା ଫେବୃୟାରୀ ବାଇଶ ତାରିଖ । ଆଜାଦ୍ ସବୁଦିନ ପାଇଁ ଶୋଇପଡ଼ିଲେ । ଏକୁଟିଆ ବାଟଚାଲି ଚାଲି ବହୁ ଥକି ପଡ଼ିଥିଲେ । ତେବେ ବି ଶେଷ ଯାଏ ସେ କାମ କରୁଥିଲେ । ଦେଶକଥା ଭାବୁଥିଲେ ।

ଆଜାଦ୍ ଏ ଦେଶରେ ଜନ୍ମ ହୋଇ ନଥିଲେ । ତଥାପି ଦେଶକୁ ସେ ନିଜର ମାଆ ବୋଲି ଧରି ନେଇଥିଲେ । ତାହାରି ସେବାରେ ଜୀବନର ଶେଷ ଘଡ଼ି ପର୍ଯ୍ୟନ୍ତ ନିଜକୁ ଲଗାଇ ଦେଇଥିଲେ ।

ସମସ୍ତେ ଏକଥା କରି ପାରନ୍ତେ ନାହିଁ । ଯେଉଁମାନେ ପାରନ୍ତି ସେମାନଙ୍କୁ ଆମେ କହୁ ମହାପୁରୁଷ ।

***